ତା ୩-୧୬ ୩୭ ଗେଜେଟରେ ନମ୍ବର ନୋଟିସରେ ଓଡ଼ିଶା ଡିରେକ୍ଟର
ମହୋଦୟଙ୍କଦ୍ୱାରା ନୂତନ ସିଲବସ୍ ଅନୁସାରେ ପୁସ୍ତକରୂପେ ନିର୍ବାଚିତ

# ସାହିତ୍ୟ ସଖା

## ପ୍ରଥମ ଭାଗ

( ଦ୍ୱିତୀୟ ଶ୍ରେଣୀ ନିମନ୍ତେ )

ଲେଖକ—

ପଣ୍ଡିତ ଶ୍ରୀ ନୀଳକଣ୍ଠ ଦାସ

# SAHITYA SAKHA

## PART

FOR CLASS II

BY

**PANDIT NILAKANTH DAS**

*New Impression*

PUBLISHED BY

**THE CUTTACK TRADING CO.**

**Balubazar, P. O. Chandnichouk**

**CUTTACK**

**1938**

*Re. 0-3-0 only* ମୂଲ୍ୟ ୦ ୦ ୬

# ସୂଚୀ


| ବିଷୟ | ପୃଷ୍ଠା |
|---|---|
| ୧ । ଈଶ୍ୱର ଯାହା କରନ୍ତି ତାହା ମଙ୍ଗଳପାଇଁ | ୧ |
| ୨ । ନିଷ୍ଠୁର କାଠୁରିଆ | ୫ |
| ୩ । ଦୋକାନ୍, ବଜାର୍, ହାଟ | ୭ |
| ୪ । ଭାଇ ଭଉଣୀ (ପଦ୍ୟ) | ୧୨ |
| ୫ । ମୂସାଙ୍କ ପିଲାଦିନ କଥା | ୧୪ |
| ୬ । ଯେ ଉଡ଼ଏ ଅମୃତଭଣ୍ଡାକୁ ଦେଖାଉଏ ଟଙ୍କା | ୧୭ |
| ୭ । ଶିବେଇ ସାଆନ୍ତାଙ୍କ ଦେଉଳ ଢୋଲା | ୨୧ |
| ୮ । ଗଛ କଅଣ ଖାଏ ? | ୨୪ |
| ୯ । ସିଦ୍ଧାର୍ଥ ଓ ହଂସ ( ପଦ୍ୟ ) | ୨୬ |
| ୧୦ । ବାଘ କଥା | ୨୮ |
| ୧୧ । ଚୁନ କଣ ? | ୩୩ |
| ୧୨ । ଦୁଇଜଣ ପ୍ରଧାନ ଓଡ଼ିଆ | ୩୫ |
| ୧୩ । ସାପୁଆ କେଳା ( ପଦ୍ୟ ) | ୩୮ |
| ୧୪ । ଖ୍ରୀଷ୍ଟ | ୪୦ |
| ୧୫ । ଆରୁଣି | ୪୨ |
| ୧୬ । କାଞ୍ଚି ଯୁଦ୍ଧ | ୪୫ |
| ୧୭ । ଜହ୍ନମାମୁ ( ପଦ୍ୟ ) | ୪୯ |
| ୧୮ । ଲୁଗା, ପାଟ, ଶାଲ୍ | ୫୦ |
| ୧୯ । କାଞ୍ଚି ଓ ସମ୍ରାଟ୍ | ୫୪ |
| ୨୦ । ଗୁଡ଼, ନବାତ ଓ ଚିନି | ୫୭ |

| ବିଷୟ | ପୃଷ୍ଠା |
| --- | --- |
| ୨୧ । ଲୁଖଗବାନ୍ଧା | ୬୦ |
| ୨୨ । ମୋ ଟିକି ଘର ( ପଦ୍ୟ ) | ୬୨ |
| ୨୩ । ହାତୀରେ ଶିକାର | ୬୩ |
| ୨୪ । କିରସିନି ତେଲ | ୬୭ |
| ୨୫ । ଚଷାପୁଅ ରଜା ହେଲା | ୭୦ |
| ୨୬ । ଫୁଲର ମୂଲ ( ପଦ୍ୟ ) | ୭୫ |



# ସାହିତ୍ୟ ସଖା



## ଈଶ୍ୱର ଯାହା କରନ୍ତି ତାହା ମଙ୍ଗଳ ପାଇଁ

ଏବର ଉଜ୍ଜୟିନୀରେ ସେବକାଳର ଅବନ୍ତୀ ରାଜ୍ୟ ଥିଲା । ସେଠାରେ ଏକ ରାଜା ଥିଲେ ଇନ୍ଦ୍ରକେତୁ । ତାଙ୍କର ମନ୍ତ୍ରୀ ଶିବଶର୍ମା । ମନ୍ତ୍ରୀ ସବୁବେଳେ ସବୁକଥାରେ କହନ୍ତି—ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ । ରାଜାଙ୍କୁ ସେକଥା ଅପସନ୍ଦ ଲାଗେ ।

ଦିନେ ଧନୁରେ ଗୁଣ ଚଢ଼ାଉ ଚଢ଼ାଉ ଗୁଣଟି ଛୁଡ଼ିଯାଇ ରାଜାଙ୍କ ବାଁ ହାତ କାଣି ଆଙ୍ଗୁଠିରୁ ଖଣ୍ଡେ କାଟି ହୋଇଗଲା । ରାଜା ଦୁଃଖ କରି ମନ୍ତ୍ରୀଙ୍କୁ କହିଲାରୁ ମନ୍ତ୍ରୀ କହିଲେ, "ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ ।" କଥାଟା ରାଜାଙ୍କୁ ସୁଖ ଲାଗିଲା ନାହିଁ ।

ଆଉଦିନେ ରାଜା ପାରିଧିକୁ ବାହାରିଲେ । ସାଙ୍ଗରେ ମନ୍ତ୍ରୀ ଗଲେ । ଆଉ ସୈନ୍ୟ ସାମନ୍ତମାନେ ବି ଗଲେ । ସମସ୍ତେ ବଣରେ ପାରିଧି କରୁ କରୁ ବେଳ ଗଡ଼ିଗଲା । ମେଘ ଉଠାଇ ଆସିଲା । ଭାରି ବର୍ଷା ବତାସ ହେଲା । ମୁହଁକୁ ମୁହଁ ଦିଶିଲା ନାହିଁ । ବତାସରେ ଡାଳ ସବୁ ଭାଙ୍ଗି ପଡ଼ିଲା । ରାଜା ମନ୍ତ୍ରୀ ଦୁହେଁ ଏକୁଟିଆ ହୋଇଗଲେ । ସୈନ୍ୟ ସାମନ୍ତ ସାଥିମାନେ କୁଆଡ଼େ ଅଛନ୍ତି, କିଛି ଜାଣି ପାରିଲେ ନାହିଁ । ରାଜା ବଡ଼ ରୁଷ୍ଟ ହୋଇ ମନ୍ତ୍ରୀଙ୍କୁ କହିଲାରୁ ମନ୍ତ୍ରୀ କହିଲେ, "ଈଶ୍ୱର ଯାହା କରନ୍ତି ସବୁ ମଙ୍ଗଳ ପାଇଁ ।"

ରଜାଙ୍କ ଦେହ ଖରାପ ଥିଲା । ସେଥିପାଇଁ ଏ କଥା ନାହିଁ ଯେ କାହାର ନିଦ ପଡ଼ିଥିଲା । ଘରେ ତରକାରି ପାଣି ଗୁଡ଼ କିଛି ନ ଥାଏ । ରଜା ମନ୍ତ୍ରୀ ଦୁହେଁ ବାଟ ଖୋଜି ଖୋଜି ଗୋଟିଏ ଆଡ଼େ ଯାଉଁ ଯାଉଁ ଅଗନା-ଅଗନ ବଣ ଭିତରକୁ ବାହାରି ଗଲେ । ଏଣେ ଅନ୍ଧାର ହୋଇ ଆସିଲା । ରଜାଙ୍କୁ ଭୋକ ଛଟପଟ ଲାଗିଲା । ସେ ବ୍ୟାକୁଳ ହୋଇ ମନ୍ତ୍ରୀଙ୍କି କହିଲେ, "କଣ କରିବା, କୁଆଡ଼େ ଯିବା ?" ମନ୍ତ୍ରୀ ପୁଣି କହିଲେ, "କିଛି ଚିନ୍ତା ନାହିଁ । ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ ।"

ରଜା ଆଉ ଏଥର ସହ୍ୟ କରି ପାରିଲେ ନାହିଁ । ବାଟରେ ଯାଉଁ ଯାଉଁ ଗୋଟାଏ ଲଣ୍ଡା କୂଅ ପରି ଗୋଟାଏ ବଡ଼ ଗହ୍ୱରିଆ ଗାତ ଦେଖିଲେ । ମନ୍ତ୍ରୀଙ୍କି ସେହି ଗାତ ଭିତରକୁ ପେଲିଦେଲେ । ଆପେ ଆଉ ଖଣ୍ଡେ ଦୂର ଯାଇ ଗୋଟାଏ ଗଛମୂଳେ ଥକା ହୋଇ ବସି ପଡ଼ିଲେ । ବସୁ ବସୁ ତାଙ୍କୁ ନିଦ ଲାଗିଗଲା ।

କିଏ ଆସି ରଜାଙ୍କୁ ଧରି ଝିଙ୍କିଲା । ରଜାଙ୍କ ନିଦ ଭାଙ୍ଗିଗଲା । ରଜା ଦେଖିଲେ, ଗୁଡ଼ାଏ ବଣୁଆ ଲୋକ ତାଙ୍କୁ ଧରି ନେଇଯାଉଛନ୍ତି । ରଜା ଶୁଣିଲେ ସେ ଲୋକ କଥାବାର୍ତ୍ତା ହେଉଛନ୍ତି, ଦେବୀଙ୍କ ଠାରେ ବଳି ଦେବାକୁ ତାଙ୍କର ଗୋଟିଏ ମଣିଷ ଦରକାର ଥିଲା । ସେଇ ମଣିଷଟି ଏବେ ମିଳିଲା ।

ରଜା ଏହା ଜାଣି ସେ ଲୋକଙ୍କୁ ବହୁତ ନେହୁରା କରି ବୁଝାଇ କହିଲେ, ସେମାନେ ଶୁଣିଲେ ନାହିଁ । ରଜାଙ୍କ ଧରି ଝିଙ୍କି ନେଇ ଯାଉଥାନ୍ତି । ବାଟ ଦେଖିବାକୁ ସେମାନେ ମଶାଲ ଲଗାଇଲେ ।

ମଶାଲ ଆଲୁଅରେ ଦେଖିଲା ବେଳକୁ ରଜାଙ୍କ ବାଁ ହାତ କାଣି ଅଙ୍ଗୁଠିଟି ଖଣ୍ଡିଆ । ଦେହରେ ଖଣ୍ଡିଆ ଥିଲେ ଦେବୀଙ୍କ ଠାରେ ବଳି



ଦେବାକୁ ମନା । ବଣୁଆ ଲୋକଙ୍କର ରଜାଙ୍କଠେଇଁ ଆଉ ଦରକାର କଣ ? ସେମାନେ ରଜାଙ୍କୁ ଛାଡ଼ିଦେଇ ଚାଲିଗଲେ ।

ରଜା ଠାଏ ବସିପଡ଼ିଲେ । କେତେବେଳ ପରେ ସକାଳ ହୋଇ ଆସିଲା । ଦୂରରେ ଘୋଡ଼ା ହାତୀ ସୈନ୍ୟ ସାମନ୍ତଙ୍କ ଶବ୍ଦ ଶୁଣାଗଲା । ସମସ୍ତେ ଆସି ରଜାଙ୍କୁ ଭେଟିଲେ । ରଜା ଖବର ପଚାରିଲେ । ସୈନ୍ୟ ସାମନ୍ତମାନେ କହିଲେ, "ସବୁ ଭଲ, ମହାରାଜ, କାଲି କୋଶଳରାଜ ସୈନ୍ୟ ସାମନ୍ତ ଧରି ଆମ ଦେଶ

ଲୁଣିବାକୁ ଆସି ଅବନ୍ତୀ ଘେରିଥିଲେ । ରାତ୍ରରେ ଭାରି ବରଷା ହେଲା । ବତାସ ପିଟିଲା । ସେମାନେ ଅସ୍ତବ୍ୟସ୍ତ ହୋଇ ସେଇ ରାତ୍ର ରାତ୍ର ଅବନ୍ତୀ ଛାଡ଼ି ପଳେଇଲେ । ସେଠାରୁ ଆମେ ମହାରାଜାଙ୍କୁ ଖୋଜିବାକୁ ଆସିଲୁ । ବାଟରେ ସୈନ୍ୟ ସାମନ୍ତଙ୍କୁ ଦେଖିଲୁ । ମହାରାଜ ଏବେ ନଅରକୁ ଚାଲନ୍ତୁ ।"

ମହାରାଜ ନଅରକୁ ଯିବେ କଅଣ ? ମନ୍ତ୍ରୀଙ୍କ କଥା ମହାରାଜାଙ୍କ ମନେ ପଡ଼ିଲା । କାନ୍ଦ କାନ୍ଦ ହୋଇ ରଜା ପଚାରିଲେ, "ଶିବଶର୍ମା କାହାନ୍ତି ? ମୁଁ ଚଣ୍ଡାଳ କାଲି ରାତ୍ରରେ ତାଙ୍କୁ କୂଅକୁ ପେଲି-ଦେଇଛି ।"

ଏହା କହୁ କହୁ ମନ୍ତ୍ରୀ ଆସି ପହଞ୍ଚି ଗଲେ । ରଜା ମନ୍ତ୍ରୀଙ୍କି ଦେଖି କାନ୍ଦ କାନ୍ଦ କୁଣ୍ଢାଇ ପକାଇଲେ । କହିଲେ, "ଶିବଶର୍ମା, ମୁଁ ଅବୋଧ, ମୋ ଦୋଷ ଧେନବ ନାହିଁ ।"

ମନ୍ତ୍ରୀ କହିଲେ, "ଈଶ୍ବର ଯାହା କରନ୍ତି ସବୁ ମଙ୍ଗଳପାଇଁ । ମହାରାଜ ମୋତେ କୂଅକୁ ପେଲି ନ ଦେଇଥିଲେ, ମୁଁ ଏତେବେଳକୁ ବଳି ପଡ଼ିଥାନ୍ତି ।"

ପ୍ରଶ୍ନ—୧ । ଜାଅଁରେ ଚଅଁ ମାଡଲା ପରି ଲଟିକୁ ଦେହ ଡଡ଼ ଥିଲା; ଧନୁରେ ଗୁଣ ଚଢ଼ାଉଥିଲେ; ପାରିଧି; ବତାସ ପିଟିଲା; ମୋ ଦୋଷ ଧେନବ ନାହିଁ—ଏହାର ଅର୍ଥ କଣ ?
୨ । ବର୍ଷା ବତାସ ହେବାରୁ ରାଜାଙ୍କର କପରି ମଙ୍ଗଳ ହେଲା ?
୩ । ରଜା ମନ୍ତ୍ରୀଙ୍କ କୂଅକୁ ପେଲି ନ ଦେଇଥିଲେ, ମନ୍ତ୍ରୀ ବଳି ପଡ଼ିଥାନ୍ତେ ବୋଲି କାହିଁକି କହିଲେ ?

# ନିଷ୍ଠୁର କାଠୁରିଆ

ଗୋଟିଏ ବଣ ପାଖରେ କୁଡ଼ିଆ ବାନ୍ଧି ଗୋଟିଏ କାଠୁରିଆ ବୁଢ଼ା ଥାଏ । ତାଙ୍କ ଘରେ ମୋଟେ ଅଢ଼େଇ ଜଣ ମଣିଷ—ସେ, ତା ଭାର୍ଯ୍ୟା ଓ ତାଙ୍କର ଦେଢ଼ ବର୍ଷର ପିଲାପୁଅ । କାଠୁରିଆର ଗୋଟିଏ କୁକୁର ଥାଏ । ପିଲାଦିନୁ ଏ କୁକୁରକୁ କାଠୁରିଆ ବୁଢ଼ା ପୋଷିଥିଲା । କୁକୁର ତାର କେତେ ଉପକାର କରିଥିଲା । କିନ୍ତୁ କୁକୁର ବୁଢ଼ା ହୋଇ ଗଲାରୁ କାଠୁରିଆ ତା ଉପକାର ସବୁ ପାସୋରି ଦେଲା । ଦିନେ କୁକୁରକୁ ଦି' ଠେଙ୍ଗା ପିଟି ବାହାର କରିଦେଇ କାଠୁରିଆ କହିଲା, "ଯା, ଯା, ମୋ ଘରୁ ନିକଲ, ବୁଢ଼ା କୁକୁର ! ତୋର ଦାନ୍ତ ପଡ଼ିଗଲାଣି, ଦି'ପାହୁଣ୍ଡ ଧାଇଁଗଲେ ଧଇଁସଇଁ ହୋଇ ଯାଉଛୁ । ଖାଲି କଂସାଏ କଂସାଏ ମୋ ଘରେ ଗିଳିବୁ କାହିଁକି ?"

କୁକୁରଟି ବିଚରା ବଡ଼ ଦୁଃଖରେ ବଣକୁ ବାହାରିଗଲା । ଏତେଦିନ ତାକୁ ଖାଇବା ପୁଞ୍ଜାକ ପାଇଁ ଚିନ୍ତା ପଡ଼ୁ ନ ଥିଲା । ବୟସ ଥିବା ଦିନଯାକ ସୁଖରେ କଟିଲା । ଏ ବୁଢ଼ା ବୟସରେ କେଉଁଠାରୁ କଣ ଆଣି ଖାଇବ ?

କୁକୁରର ଗୋଟିଏ ଗଧିଆ ସାଙ୍ଗେ ପରିଚୟ ଥାଏ । କୁକୁର ଯାଇ ସେଇ ଗଧିଆକୁ ସବୁ କଥା କହିଲା । ଗଧିଆ ସବୁ ଶୁଣି ଟିକିଏ ଭାବିକରି କହିଲା, "ଭାଇ, ତୋ ପାଇଁ ଗୋଟିଏ ଫନ୍ଦି ମୁଁ ପାଞ୍ଚିଲିଣି । ତୁ ଗୋଟିଏ କାମ କରିବୁ, ମୁଁ କାଲି ତମ ଘରଆଡ଼ୁ ଧାଇଁ କରି ପଳେଇ ଆସିଲା ବେଳେ, ତୁ ମୋତେ ଗୋଡ଼ାଇ ଯିବୁ, ଆଉ ଦି' ପୁଳା କାମୁଡ଼ ଦେବୁ । ବୁଢ଼ା କାଠୁରିଆ ତତେ ଏ ଅସମର୍ଥ ବୟସରେ ଛାଡ଼ ଦେ[illegible] । ତାକୁ ଉଚିତ ଶିକ୍ଷା ଦେବା ।"

କୁକୁର କହିଲା, "ମୋର ତ ଦାନ୍ତ ନାହିଁ । ମୁଁ କାମୁଡ଼ିବି କିପରି ? ଆଉ ଦାନ୍ତ ଥିଲେ ବା ମୁଁ ତତେ କାମୁଡ଼ିବା କଥଣ ହୁଅନ୍ତା ? ତୁ ପରା ମୋ ସାଙ୍ଗ ?"

ଗଧିଆ କହିଲା, "ଖାଲି ମୋ ବୁମଗୁଡ଼ାକୁ ଟିକିଏ ଝୁଣି ଦେଇପାର କରିପାରିବୁ ନାହିଁ ? ସେତିକି କଲେ ତତେ ଜୀବନ ତମାମ ଦରବ ଭାତ ଡାଲି ମିଳିବ, ଜାଣିଥା ।" କୁକୁର 'ହଉ' ବୋଲି କହିଲା ।

କାଠୁରିଆଣୀ ବୁଢ଼ୀ ପ୍ରତିଦିନ ସକାଳୁ ବାଡ଼ି ପଣ୍ଡାରେ ପିଲାଟିକୁ କନା ଖଣ୍ଡିକରେ ଶୁଆଇ ଦେଇ ବାସିପାଇଟି କରେ । ଗଧିଆ ଏକଥା ଜାଣିଥିଲା । ତହିଁ ଆରଦିନ ସକାଳୁ ସେ ଧାଇଁ ଧାଇଁ ଯାଇ କନାସୁଦ୍ଧା ପିଲାକୁ ଧରି ମାଇଲା ଚମ୍ପଟ । ବୁଢ଼ୀ ଯୁଆ ଦେଖିପାରି 'ହୋ ହୋ' ହେଇ ତା ପଛରେ ଝାଡ଼ୁଣୀ ମୁଠା ଧରି ଧାଇଁଥାଏ, "ମୋ ପିଲାକୁ ନେଇଗଲା ଲୋ" "ମୋ ଧନକୁ ଖାଇଗଲା ଲୋ" ବୋଲି ପାଟି କରୁଥାଏ । ପାଖରେ କିଏ ଅଛି ଯେ ଧାଇଁ ଆସି ପିଲାକୁ ଛଡ଼େଇ ଆଣିବ ?

କୁକୁର ଏତିକିବେଳେ ଭୋ ଭୋ ହୋଇ ଧାଇଁଆସି ଗଧିଆକୁ ଦ' ପୁଳା କାମୁଡ଼ିଦେଲା । ଗଧିଆ ପିଲାକୁ ଛାଡ଼ିଦେଇ ପଳେଇଲା । ବୁଢ଼ୀ ଧାଇଁଆସି ପିଲାକୁ ଗୋଟେଇ ପକେଇଲା । କୁକୁରକୁ ବହୁତ ଆଉଁଶିଲା ।

କାଠୁରିଆ ବୁଢ଼ା କାଠ ହାଣି କରି ଘରେ ପଶୁ ପଶୁ ବୁଢ଼ୀ ଧାଇଁଆସି ସବୁ କଥା କହିଲା । କାଠୁରିଆ ଭାରି ଖୁସୀ ହୋଇ କହିଲା, "ବାଃ, ମୋ ବଳିଆ ବୁଢ଼ା ହେଲେ କଣ ହେଲା, ଗୁଣ ଛାଡ଼ିନାହିଁ ।" ସେହିଦିନଠାରୁ ଆଗ କୁକୁରକୁ ପେଟପୂରା ଖାଇବାକୁ ଦେଇ ସାରିଲେ ବୁଢ଼ା ଖାଇବସେ ।

ପ୍ରଶ୍ନ—୧ । 'ମୋ ବଳଅ ବୁଢ଼ା ହେଲେ କଣ ହେବ ଗୁଣ ଛଡ଼ି ନାହିଁ' ବୋଲି ବୁଢ଼ା କାହିଁକି କହିଲା ?

୨ । ବୁଢ଼ାଦିନେ କୁକୁରକୁ ଢାଠୁରଅ କାହିଁକି ତଡ଼ ଦେଇ ଥିଲା ?

୩ । ବୁଢ଼ାଢାଠୁରଅ ଘରେ ଅଡ଼ୁଇ ଜଣ ମଣିଷ ଥିଲେ କିପରି ? ତମ ଶ୍ରେଣୀରେ କେତେଜଣ ପିଲା ଅଛ ?

୪ । ଧଇଁସଇଁ ହୋଇ ଯାଉଛି, ବକଲ, ଅସମର୍ଥ, ଜୀବଜନ୍ତୁମାନ— ଏହି ଶବ୍ଦମାନ ନିଜ କଥାରେ ବ୍ୟବହାର କର ।

୫ । କନାଗୁଡ଼ା—ଏଥିରେ ଗୁଡ଼ା ଯେଉଁ ଅର୍ଥରେ ଲାଗିଛି, ସେପରି ଅନ୍ୟ ୫ଟି ଶବ୍ଦ ତିଆର କର ।

---

# ଦୋକାନ, ବଜାର, ହାଟ

## ୧ । ଦୋକାନ

ରାମ—କିରେ ମଧୁ ତୋର ଏତେ ଉଚ୍ଛୁର ହେଲା କାହିଁକି ? ମୁଁ ଖରା ପଡ଼ିଲା ଉତ୍ତାରୁ ଘରୁ ବାହାରିଲି । ମୁଁ ତ କେତେବେଳୁ ଆସିଲିଣି ।

ମଧୁ—ମୁଁ ତ ସକାଳୁ ପଖାଳ ଖାଇ ଆସେ । ପଖାଳ ବାଢ଼ିବାକୁ ଗଲାବେଳକୁ ବୋଉ କହିଲା, ଘରେ ଲୁଣ ନାହିଁ । ବାପା ତ ବିଲକୁ ଯାଇଥିଲେ । ବୋଉ ପଇସା ଦେଲା, ମୁଁ ଲୁଣ କିଣିବାକୁ ଦୋକାନକୁ ଗଲି । ଦୋକାନ ଫିଟିନଥିଲା । ମୁଁ ଘଡ଼ିଏ ଠିଆ ହେଲି । ଭରତ ସାହୁକୁ ଡାକିଲି । ସେ ଆସି ଦୋକାନ ଫିଟାଇ ମତେ ଲୁଣ ଦେଲା । ସେ କାଲି ରାତିରେ ହାଟରୁ ଭଲ ବାଇଗଣ ଆଣିଥିଲା । ମୋ ଅଣ୍ଟିରେ

ଦୁଇ ପଇସାର ବାଇଗଣ ଦେଲ । କହିଲ, "ବାଇଗଣ ନେଇ ଯା; ବାପା ପଛେ ପଇସା ଦେବେ ।" ବାଇଗଣ ପୋଡ଼ା-ହେଲ । ମୁଁ ଖାଇଲି, ଆସୁଛ ତ ।

ଶ୍ୟାମ—ତେବେ ତୁମର କଣ ବଜାରରୁ ଲୁଣ ମାଲସା ପନିପରିବା ଆସେ ନାହିଁ କି ? ବଜାରରେ ତ କେତେ ଦୋକାନ ଦେଖି ଦେଖି ଯେଉଁ ଦୋକାନରୁ ମନ ସେ ଦୋକାନରୁ ବାଛିକରି କିଣାଯ ଆଣିବ । ଏକାବେଳକେ ଠିକ୍ ଠିକ୍ କରି ଲୁଣ ମାଲପା କିଣି ଆଣିଲେ ଶସ୍ତା ପଡ଼ିବ । ତୁ ବାପାଙ୍କୁ କହୁନ ।

ମଧୁ—ଆମ ବାପା କେବେ ବଜାରକୁ ଯାଆନ୍ତି ନାହିଁ । ବାପା ଥରେ ଥରେ ହାଟକୁ ଯାଆନ୍ତି । ହାଟରୁ ସାରୁ, ବାଇଗଣ, କଦଳୀ, ମୂଳା, କଖାରୁ ସବୁ କିଣି ଆଣନ୍ତି । ଥରେ ଥରେ ବହୁତ କିଣିଆଣି ଦାଣ୍ଡ ଦୁଆରେ ଭାଗ ବସାଇ ବିକନ୍ତି । ନ ହେଲେ ଭରତ ସାହୁ ଦୋକାନରେ ବିକିବାପାଇଁ ରଖି ଦଅନ୍ତି ।

ଶ୍ୟାମ—ତେବେ ହାଟ କଣ ବଜାର ନୁହେଁ କି ? ବାପାଙ୍କୁ କହୁନୁ ହାଟରୁ ଏକାଠି ଲୁଣ କିଣି ଆଣି ରଖି ଦେବେ, ଶସ୍ତା ପଡ଼ିବ । ଆଜି ତୁ କେତେ ସକାଳୁ ଲୁଣ କିଣିବାକୁ ଦୋକାନକୁ ଯାଉଥିଲୁ । ସକାଳୁ ତ ଦୁଇଘଡ଼ି ଦୋକାନକୁ ଯିବୁ । ଆଜି ପାଠ ପଢ଼ିବୁ କେତେବେଳେ ?

ମଧୁ—ତୁ ତ ବଡ଼ ସକାଳୁ ଆସି ସବୁ ପାଠ ପଢ଼ୁଛୁ । ତେବେ ହାଟ ବୋଇଲେ ଯାହା, ବଜାର ବୋଇଲେ ସେଇଆ, ଏକଥା ତୋତେ କିଏ କହିଲା ?

ଶ୍ୟାମ—ହାଟ ବଜାର ଏକା କଥା ନୁହେଁ ? ତେବେ ତୁ କହିଲୁ ହାଟ କଣ, ବଜାର କଣ ?

## ୨ । ବଜାର

ମଧୁ—ଆରେ, ବଜାର କହିଲେ, ଆମ ଗାଁ ଭରତସାହୁ ଦୋକାନ ଘର ସେଠାରେ ଏକାଠି ବହୁତ ଦୋକାନ ଥାଏ । ବଡ଼ବଡ଼ ସହରମାନଙ୍କରେ ଓ ପେଣ୍ଠ ଜାଗାରେ ବହୁତ ଦୋକାନ ଏକାଠି ରହିଲେ ତାକୁ ବଜାର କହନ୍ତି । ବଜାରରେ ଲୁଣ ମାଲପା ଦୋକାନ ଥାଏ, ଘିଅ-ମସଲା ଦୋକାନ ଥାଏ, ଲୁଗା ପଟା ଦୋକାନ ଥାଏ, ପରିବା ଦୋକାନ ଥାଏ, ଏହିପରି ସବୁ ରକମର ଦୋକାନ ଥାଏ । ଜାଗାକୁ ଚାହିଁ ବଡ଼ ବଜାରରେ ବେଶି ଥାଏ, ସାନ ବଜାରରେ ଅଳପ ଥାଏ । ଦୋକାନୀମାନେ ସକାଳୁ ଦୋକାନ ଫିଟାନ୍ତି, ରାତିରେ ବନ୍ଦ କରନ୍ତି । ଦୋକାନ ଫିଟିଥିବାତକ ସବୁବେଳେ କିଣା ବିକା ଲାଗିଥାଏ ।

ରାମ—କିଣା ବିକା କ'ଣ ଲାଗି[illegible]ଏ ? ଲୋକେ ତ ଯାଇ ସବୁ କିଣନ୍ତି । ଆଉ ଲୋକେ ସେଠା[illegible]କିନ୍ତି ?

ମଧୁ—ନା, କିଣିବା ଲୋକଙ୍କୁ ଦୋକାନୀମାନେ ବିକନ୍ତି । ତେବେ ଚାଷୀମାନେ ସକାଳୁ ପରିବା ପୋଟ ସବୁ ଆଣି ବଜାର ଦୋକାନରେ ଶସ୍ତାରେ ବିକିଦେଇ ଯାଆନ୍ତି । ଗଉଡ଼ ଦୁଧ ଆଣି ମାଠିଆ ମାଠିଆ କରି ବଜାର ଦୋକାନରେ ବିକିଦେଇ ଯାଏ । ତନ୍ତୀ ଲୁଗା ଆଣି ବଜାରରେ ବିକିଦିଏ । ଏହିପରି ସମସ୍ତଙ୍କଠାରୁ କିଣି ଦୋକାନୀମାନେ ଲୋକଙ୍କୁ ଟିକିଏ ଅଧିକ ଦାମରେ ବିକନ୍ତି । ସେଥିରୁ ଯାହା ମିଳେ ଦୋକାନୀଙ୍କର ଲାଭ । ଏହିପରି ଦୋକାନରେ କିଣା ଲାଗିଥାଏ, ବିକା ବି ଲାଗିଥାଏ ।

## ୩ । ହାଟ

ରାମ—ହାଟରେ ତେବେ କଅଣ କିଣା ବିକା ଲାଗି ନ ଥାଏ ? ତୁ ହାଟ ଦେଖିଛୁ ?

ମଧୁ—ତୁ କଣ ହାଟ ଦେଖିନାହୁଁ ? ମୁଁ କେତେଥର ବାପାଙ୍କ ସଙ୍ଗରେ ହାଟକୁ ଯାଇଛି ।

ରାମ—ମୁଁ ହାଟ ଦେଖି ନାହିଁ । ତୁ ଦିନେ ଗଲାବେଳେ ମୋତେ ସାଙ୍ଗରେ ନେଇଯିବୁ । ଆଜ୍ଞା ଭଲା କହିଲୁ ହାଟରେ କଣ ହୁଏ ?

ମଧୁ—ଆଗ ଗୋଟିଏ କଥା—ହାଟ ନିତି ହୁଏ ନାହିଁ କି ସକାଳୁ ରାତିଯାଏ ବସେ ନାହିଁ ।

ରାମ—ହାଟ ତେବେ କେଉଁଦିନ ହୁଏ ?

ମଧୁ—ସବୁ ହାଟ ହପ୍ତାକେ ଦୁଇ ଦିନ ବସେ । କିଏ ବସେ ସୋମ ଓ ଗୁରୁବାର, କିଏ ବସେ ମଙ୍ଗଳ ଓ ଶୁକ୍ରବାର, କିଏ ବସେ ବୁଧବାର ଓ ରବିବାର ।

ରାମ—ଆଚ୍ଛା, ଏ ବାରମାନଙ୍କରେ କେତେବେଳେ ବସେ ?

ମଧୁ—ସକାଳୁ ହାଟ ବସେ ନାହିଁ । ହାଟରେ ଦୋକାନ ନ ଥାଏ । ଘର କରି ସେଠାରେ କେହି ଦୋକାନ କରନ୍ତି ନାହିଁ । ଖାଇପିଇ ସାରି ଦି'କୋଶ ଚାରିକୋଶ ଦୂରରୁ ଲୋକେ ହାଟକୁ ଜିନିଷମାନ ଧରି ବିକିବାପାଇଁ ଆସନ୍ତି । ବଡ଼ ବଡ଼ ହାଟକୁ ଆହୁରି ବହୁତ ଦୂରରୁ ବିକାଳି ଲୋକେ ଆସନ୍ତି । ଚାଷୀମାନେ ଗଡ଼ି, ସାରୁ, ପରିବା, ଚାଉଳ, ମୁଗ, ବିରି ବୋଝମାନ ଧରି ଆସନ୍ତି । ତନ୍ତୀମାନେ ପିଠିରେ ଲୁଗା ବୋଝମାନ ପକାଇ ଲଇଁ ଲଇଁ ଆସନ୍ତି । ଲୋକେ ଶଗଡ଼ରେ ଗୁଡ଼, ନଡ଼ିଆ ଧରି ଆସନ୍ତି । ଏଇପରି ଖାଇବା ପିନ୍ଧିବା ଜିନିଷମାନ ଧରି ବିକିବା ପାଇଁ ଲୋକେ ଆସି ଦୁପରବେଳା ପହଞ୍ଚନ୍ତି । କିଣିବା ଲୋକେ ବି ଦୂରଗାଁମାନଙ୍କରୁ ଆସି ସେତିକି ବେଳକୁ ପହଞ୍ଚନ୍ତି । ବୋଝିଆ, ଶଗଡ଼ିଆମାନେ ଆଉ ଦୋକାନରେ ନ ବିକି କିଣି ଖାଇବା

ବିକିବା ଲୋକଙ୍କୁ ସାଙ୍ଗେ ସାଙ୍ଗେ ଜିନିଷ ବିକି ଦିଅନ୍ତି । ସବୁ ବୋଝ, ଶଗଡ଼ ପାଖେ ଭାରି ଗହଳି ଲାଗେ । ଲୋକେ ଜମା ହୋଇ ଭିଡ଼ କରୁଥାନ୍ତି । ପାଟି ହେଉଥାଏ । ବଡ଼ ବଡ଼ ହାଟର ଧୁଧୁ ଶବ୍ଦ ବାଟକୁ ଶୁଣାଯାଏ । ବୋଝିଆ, ଶଗଡ଼ିଆମାନେ ସେଇଦିନ ସବୁ ବିକିଦେଇ ଯିବେ । ଯେବେ ରାତି ହୋଇଯାଏ, ବିକା ହୋଇ ନଥାଏ, ତେବେ ବୋଝିଆ, ଶଗଡ଼ିଆମାନେ ଶସ୍ତାରେ ବିକିଦେଇ ଯାଆନ୍ତି । ଆମଦାନି କରିବା ଲୋକେ କିଣିବାପାଇଁ ଆସିଥାନ୍ତି । ଦି'ପଇସା ହେଲେ କେତେ, ନ ହେଲେ କେତେ ? ସେ ତ କିଛି ଦୋକାନୀ ନୁହନ୍ତି ଯେ ଲାଭକୁ ଚାହିଁ ବସିବେ ।

ରାମ—ତେବେ ହାଟରେ ତ ରାତି ହୋଇଗଲେ ଜିନିଷସବୁ ଭାରି ଶସ୍ତାରେ ମିଳୁଥିବ ?

ମଧୁ—ହଁ, ଜିନିଷ ବଳି ପଡ଼ିଲେ ଶସ୍ତା ରେ ମିଳେ । ଯେଉଁଦିନ କିଣିବା ଲୋକ ବେଶି ଥାଆନ୍ତି, ସେ ଦିନ ଆଗରୁ ସରିଯାଏ । ଶସ୍ତା ହେବ ବୋଲି ଚାହିଁଥିବା ଲୋକେ ପାଆନ୍ତି ନାହିଁ ।

ରାମ—ତେବେ ହାଟରେ ଘର ନଥାଏ, ଜିନିଷ ରଖନ୍ତି କେଉଁଠି ?

ମଧୁ—ହାଟରେ ଧାଡ଼ି ଧାଡ଼ି ହୋଇ ଚାଳିଆ ହୋଇଥାଏ । କେଉଁଠାରେ ଲୁଗା, କେଉଁଠାରେ ଗୁଡ଼, କେଉଁଠାରେ ଚାଉଳ, କେଉଁଠାରେ ପରିବା, କେଉଁଠାରେ ମାଛ ଏହିପରି ଠାକୁ ଠା' ବିକାଳି ହେବାର ଜାଗା ଥାଏ । ହାଟର ଜମିବାଲା ବିକିବା ଲୋକଙ୍କ ଠାରୁ ତୋଲା ନିଏ ।

ରାମ—ତୋଲା କଣ ?

ମଧୁ—ଆରେ, ତୋଳା ତୋଳାଇଲେ କ'ଣ କି, ଯେଉଁ ଜିନିଷ ଯେ ବିକେ ସେଥିରୁ ପୁଳାଏ ତୋଳି ବା ଟେକି କରି ହାଟବାଲାଙ୍କୁ ସେ ଭଡ଼ା ଦିଏ। ତାକୁ କହନ୍ତି ତୋଳା। ଏ ତ ଜାଣୁ ଦୋକାନୀ ନୁହନ୍ତି ଯେ ପଇସାରେ ଭଡ଼ା ଦେବେ ? ହାଟରେ ସବୁ ତୋଳା ଦିଆ ହୁଏ। ଖଡ଼ା ବିକିବା ବାଲା ଦୋଟେଙ୍କେ ଗଛେ ଦି'ଗଛ ଖଡ଼ା ଦିଏ। ଆମ୍ବ ବିକିବା ବାଲା ପଣକେ ଗୋଟାଏ ବା ଦୁଇଟା ଆମ୍ବ ଦିଏ। ଏଇପରି ହାଟବାଲା ସମସ୍ତଙ୍କଠାରୁ ନେଇ ଆସେ ଦୋକାନରେ ବିକି ପଇସା କରେ।

ପ୍ରଶ୍ନ—୧। ତମ ଗାଁ ପାଖେ କେଉଁ ହାଟ ଅଛି ? ତମ ଗାଁ ପାଖ ହାଟରେ କଣ କିଣା ବିକା ହୁଏ ?

୨। ପିଲାମାନେ ଶ୍ରେଣୀରେ ଗୋଳମାଳ କଲେ ମାଷ୍ଟ୍ରେ କହନ୍ତି "ଏଠାରେ କଣ ହାଟ ବସିଛି କି ରେ ?" କାହିଁକି ଏପରି କହନ୍ତି ?

୩। ଦୋକାନ, ବଜାର, ହାଟ, କିଣା, ବିକା, ଭିଡ଼, ଗହଳି, ଅମଦାନି ଏ କଥାର ଅର୍ଥ ବୁଝିଲ କି ? ନିଜ କଥାରେ ଏ ଶବ୍ଦ ସବୁ ବ୍ୟବହାର କର।

---

## ଭାଇ ଭଉଣୀ

ଆମେ ଦୁଇ ଭାଇ ଗୋଟିଏ ଭଉଣୀ
ଯାଇଥିଲୁ ମାମୁଁଘର,
ମାଈଁ ଦେଇଥିଲେ ତେନୋଟି କୁଣ୍ଡେଇ
ସବୁଯାକ ତିନିଙ୍କର।

ବୋଉଁ ବାଣ୍ଟି ଦେଲା, ବଡ଼ କୁଣ୍ଢେଇଟି
ପଡ଼ିଲା ଭଉଣୀ ଭାଗ,
ସେଥିରୁ ଗୋଟିଏ ଧଇଲି ମୁଁ ନେଇ
ଭାଇ ହେଲା ମତେ ରାଗ ।

ମୋଡ଼ିଲା ମୋ ହାତ ନ ଛାଡ଼ିଲି ମୁହିଁ
ଭିଡ଼ିଲା କୁଣ୍ଢେଇ ଧରି,
ସୁନ୍ଦର ବସ୍ତ୍ରଭ ମୁଣ୍ଡା ଧରିଥିଲା
ମୁଣ୍ଡା ତାର ଗଲା ଛାଡ଼ି ।

ଭଙ୍ଗା କୁଣ୍ଢାଇଟା ଫୋପାଡ଼ି ଦେଇ ମୁଁ
କାନ୍ଦିଲି କୋହୋର ହୋଇ
ଭମ ଭମ ହୋଇ ଗଲି ଗଲା ଭାଇ
ବାପାଙ୍କୁ ଦେବାକୁ କହି ।

ଟିକି ଭଉଣୀଟି ଧରି ତା କୁଣ୍ଢେଇ
ଛଳ ଛଳ ଆଖି କରି
'ଏଥିରୁ ନେଏ ଭାଇ', ବୋଲି କଇଁ କଇଁ
କାନ୍ଦିଲା ମୋ ହାତ ଧରି ।

ପ୍ରଶ୍ନ—୧ । ଟିକି ଭଉଣୀଟି କାହିଁକି ଅପଣା କୁଣ୍ଢେଇଟି ଭାଇକି ଯାଚିଲା ?

୨ । ଯେଉଁ କୁଣ୍ଢେଇଟି ଭଙ୍ଗିଗଲା ତାହା କି କୁଣ୍ଢେଇ ?

୩ । କଇଁ କଇଁ, ଛଳ ଛଳ, କୋହୋର ହୋଇ—ଏହାର ଅର୍ଥ
କଣ ?

# ମୁସାଙ୍କ ପିଲାଦିନ କଥା

ଆଫ୍ରିକାରେ ମିସର ବୋଲି ଯେଉଁ ଦେଶ ଅଛି ସେଥିରେ ପୂର୍ବକାଳରେ ଜଣେ ବଡ଼ ପ୍ରତାପୀ ରାଜା ଥିଲେ । ମିସରରେ ସେତେବେଳେ କେତେଗୁଡ଼ାଏ ବିଦେଶୀ ଲୋକ ଆସି ରହୁଥିଲେ । ବିଦେଶୀ ଲୋକମାନେ ରଜାଙ୍କର ମନ୍ଦ ଚାହୁଁଛନ୍ତି ବୋଲି ଶୁଣିପାରି ରଜା ସେମାନଙ୍କ ଉପରେ ଖାର ରଖିଲେ । ରଜା ହୁକୁମ କଲେ ଯେ, ଏଥର ଏଣିକି ତାଙ୍କ ରାଜ୍ୟରେ ଥିବା ବିଦେଶୀ ଲୋକଙ୍କର ଯେତେ ପୁଅ ଜନ୍ମ ହେବେ ସେ ସମସ୍ତଙ୍କ ନଈରେ ଭସେଇ ମାରି ଦେବାକୁ ହେବ ।

ଦିନେ ଯୋସୀବେଦ ବୋଲି ଜଣେ ସ୍ତ୍ରୀର ଗୋଟିଏ ପିଲା ଜନ୍ମହେଲା । ଯୋସୀବେଦଙ୍କ ଘର ବିଦେଶୀ ଲୋକ । ରଜାଙ୍କ ଲୋକେ ଏ ପିଲା ଜନ୍ମ ହେବାରି ଶୁଣିଲେ ଆସି ପିଲାଟିକି ନେଇଯିବେ, ଏଇକଥା ଭାବୁଥିବା ସାନ ପିଲାଟିର ମା, ବାପ ବହୁତ କାନ୍ଦିଲେ । ପିଲାଟିକି ରଜାଙ୍କ ଲୋକମାନଙ୍କଠାରୁ ଲୁଚେଇବାପାଇଁ କାହାକୁ କିଛି କହିଲେ ନାହିଁ ।

ପୁଲିସ୍‌କୁ ଏକଥା ଅଛପା ରହିବ କେତେ ଦିନ ? ପିଲାର କୁଆଁ କୁଆଁ ଶବ୍ଦ ଶୁଣି ଦିନେ ପୁଲିସ୍‌ବାଲା ଆସି ଦାଣ୍ଡଦୁଆରେ ହାଜର । ପୁଲିସ୍‌ବାଲା ପିଲାକୁ ମାଗିଲେ; ଆଉ ଆଗରୁ ଖବର ନ ଦେଇଥିବାରୁ ପିଲାର ବାପ, ମାଆଙ୍କୁ ମାରପକାଇବେ ବୋଲି ଡରାଇଲେ । ଯୋସୀବେଦ ଆଉ ତା' ଝିଅ ମୋରେଏମ୍ ଭବାପାଉ କାନ୍ଦୁଥାନ୍ତି । ମା, ଝିଅଙ୍କର କାନ୍ଦ ଶୁଣି ପୁଲିସ୍‌ବାଲାଙ୍କର ଦୟା ହେଲା । ସେମାନେ କହିଲେ, "ପିଲାକୁ ପାଣିରେ ଗାଡ଼ି ଭସେଇ ଦେବା ନାହିଁ । ଗୋଟିଏ ବାଉଁଶ ଟୋକେଇରେ ପିଲାକୁ ରଖି ପାଣିକି

ପେଲି ଦେବା । ସେଥିରୁ ତା ଭାଗ୍ୟରେ ଯାହା ଥିବ ସେ ଭୋଗିବ ।" ଅନ୍ୟ ଉପାୟ ନ ଦେଖି ମୋଇଏମ୍‌ର ବାପା ଏଥିରେ ରାଜି ହେଲେ । ବାଉଁଶରେ ନକୁଲ କରି ଗୋଟିଏ ଟୋକେଇ ବୁଣିଲେ । ମହଣ ଦେଇ କଣାସବୁ ବୁଜି ଦେଲେ । ତା' ଭିତରେ ଗୋଟିଏ ଟିକି ଗଦିଆ ପକେଇ ପିଲାଟିକି ସେଥିରେ ରଖି କାନ୍ଦ କାନ୍ଦ ଟୋକେଇଟି ପୁଲିସ୍‌ଙ୍କ ହାତକୁ ଟେକି ଦେଲେ ।

ପୁଲିସ୍‌ବାଲା ଟୋକେଇଟି ନେଇ ପାଣିରେ ଭସେଇ ଦେଲେ । ପିଲାର ବାପ, ମାଆ ପୁଅ ହରାଇ ଦୁଃଖରେ ହତଜ୍ଞାନ ହୋଇ ପଡ଼ିଲେ । କିନ୍ତୁ ତା ଭଉଣୀ ମୋଇଏମ୍ ଆଶା ଛାଡ଼ିଲା ନାହିଁ । ସେ ଗୋଟିଏ ଘଡ଼ିରେ ଦୁଧ ଟିକିଏ ଧରି ନେଇ କୂଳକୁ ଧାଇଁଲା । କୂଳେ କୂଳେ ଖଣ୍ଡେ ବାଟ ଯାଇ ଦେଖିଲା, ଟୋକେଇଟି ଭାସି ଭାସି ଯାଉଛି । ମୋଇଏମ୍ କୂଳେ କୂଳେ ସେଇ ଟୋକେଇଟିକି ଚାହିଁ ଚାହିଁ ଯାଉଥାଏ । ଯେତେବେଳେ ଟୋକେଇଟି କୂଳରେ ଲାଗେ ସେତେବେଳେ ସେ ଘଡ଼ିରୁ ଟିକିଏ ଦୁଧ ପିଲାଟିର ପାଟିରେ ଦିଏ । ପୁଣି ଟୋକେଇଟିକି ପାଣିକି ଭସେଇ ଦିଏ । ଏମିତି କେତେବେଳ ଗଲା, ମୋଇଏମ୍ ସେହିପରି ଚାଲିଥାଏ । ସେ ଭାବୁଥିଲା, "ଏଇ ରାଜ୍ୟରେ ସିନା ରାଜାଙ୍କର ହୁକୁମ । ଟୋକେଇ ନଈରେ ଭାସି [illegible] ଯେତେବେଳେ ଅନ୍ୟ ରାଜ୍ୟରେ ପହଞ୍ଚି [illegible] ମୁଁ ଟୋକେଇରୁ କାଢ଼ି ଆଣିବ । ଭିଖ ମାଗି [illegible]

ଭାଇ ଭାସି ଭାସି ଯାଉଥାଏ, ଭଉଣୀ କୂଳେ କୂଳେ ତାକୁ ଚାହିଁ ଚାହିଁ ଯାଉଥାଏ, ଏପରି ସମୟରେ ଭଉଣୀ ମୋଇଏମ୍ ଦେଖିଲା, ତାଙ୍କ ରାଜ୍ୟର ରାଜଜେମା ପୋଇଲି ସରବାରୁ [illegible] 'ସେ ନଈକୁ ଗାଧୋଇ ଆସୁଛନ୍ତି । ଟୋକେଇ ଉପରେ ରାଜଜେମା [illegible]

ଦୃଷ୍ଟି ପଡ଼ିଲା । ପୋଇଲି ଭିତରୁ ଜଣେ ପହଁରି ଯାଇ ଝୋଟକେଇଟି କୂଳକୁ ଆଣିଲା । ଜେମା କଅଁଳ ପିଲାଟିକୁ ଦେଖି ଆପଣା ଘରକୁ ନେଇ ପାଳିବାକୁ କହିଲେ ।



ଏହି ସମୟରେ ମୋରିଏମ୍ ଜେମାଙ୍କ ଆଗକୁ ଆସି କହିଲା, "ମା, ତମେ ଯେବେ କହିବ, ମୁଁ ଗୋଟିଏ ଭଲ ଧାଈମା ଏ ପିଲାପାଇଁ ଆଣି ଦେବି ।" ସେହିକ୍ଷଣି ଯାଇ ଧାଈ ଡାକି ଆଣିବାକୁ ଜେମା

ହୁକୁମ ଦେଲେ । ମୋରିଏମ୍ ଧାଇଁ ଧାଇଁ ଯାଇ ବାପ, ମାଙ୍କୁ ସବୁ କଥା କହିଲା । ଯୋସୀବେଦ ସେହିକ୍ଷଣି ଆସି ପିଲାର ଧାଈ ହେବାକୁ ରାଜି ହେଲେ ।

ରାଜକନ୍ୟା ପିଲାଟିର ନାମ ଦେଲେ ମୁସା । ଏହି ମୁସା ବଡ଼ ହୋଇ ଜଣେ ମହାପୁରୁଷ ହେଲେ ।

ପ୍ରଶ୍ନ—୧ । ପ୍ରତାପୀ, ମନ୍ଦ ପାଣ୍ଠିବା, ଅଛୟା ରହିବା, କୁଆଁ କୁଅଁ, ଭଙ୍ଗାପାର କାନ୍ଦିବା, ନିବୁଜ—ଏହାର ଅର୍ଥ କଣ ?

୨ । ରାଜା ଖାଲି ପୁଅଙ୍କୁ ଭସେଇ ଦେବାକୁ କାହିଁକି କହିଲେ, ଝିଅଙ୍କୁ କାହିଁକି ଛାଡ଼ିଦେଲେ ?

୩ । ମୋରିଏମ୍ କେଉଁ ଆଶାରେ ନଈକୂଳ ଧରି ଚାଲିଥାଏ ?

୪ । ମୁସାଙ୍କ ବଡ଼ ହେବା କଥା ମାଷ୍ଟ୍ରଙ୍କୁ ପଚାରି ବୁଝ ।

---

## ଯୋଡ଼ିଏ ଅମୃତଭଣ୍ଡାକୁ କୋଡ଼ିଏ ଟଙ୍କା

ବାଲେଶ୍ୱର ଜିଲ୍ଲାରେ ଗୋଟିଏ ଗାଁରେ ଗୋଟିଏ ବୁଢ଼ୀ ଥାଏ । ବୁଢ଼ୀଟି ଭାରି ଗରିବ । ତାର ଗୋଟିଏ ସାନ ଝିଅ, ଆଉ କେହି ନ ଥାଏ । ସେ ଦୁଃଖ କରି ଆପେ ଚଳେ, ଝିଅଟିକୁ ଚଳାଏ ।

ବୁଢ଼ୀର ଜମିବାଡ଼ି ନ ଥାଏ । ସେ ଅଗଣାରେ କେତେଗୁଡ଼ାଏ ଅମୃତଭଣ୍ଡା ଗଛ ଲଗାଇଥାଏ । ସେହି ଗଛରେ ଯେଉଁ ଅମୃତଭଣ୍ଡା ଫଳେ, ବୁଢ଼ୀ ତାକୁ ବଜାରରେ ବିକି ସେଥିରୁ ଯାହା ପଇସା ପାଏ, ସେଥିରେ ଗୁଜରାଣ କରେ ।

ଦିନେ ସକାଳେ ବୁଢ଼ୀ ଗଛଯାକ ଦେଖି ଦେଖି ଯୋଡ଼ିଏ ଅମୃତଭଣ୍ଡା ତୋଳି ତାକୁ ବିକିବାପାଇଁ ବଜାରକୁ ଗଲା । ମଫସଲ

ଗାଁ ବଜାର ତ । ସେଥିରେ ଲୋକ ଗହଳି ନାହିଁ । ବଜାର ଉପରେ ଥାନା ଘର । ଥାନାରେ ପୁଲିସବାବୁ ଜଣେ, ଆଉ କେତେଗୁଡ଼ିଏ କନେଷ୍ଟବଲ ବା ସିପେହି ଥାନ୍ତି ।

ବୁଢ଼ୀ ଅମୃତଭଣ୍ଡା ଘେନି ଯାଉଥିଲା । ପୁଲିସବାବୁ ଦେଖି ବୁଢ଼ୀକି ଡାକିଲେ । ବୁଢ଼ୀ ଆସିଲାରୁ ତା ଅମୃତଭଣ୍ଡା ପୋଇଡ଼ି ଭିତରୁ ଗୋଟିଏ ବାଛି କରି ଧଇଲେ । ବୁଢ଼ୀକୁ କହିଲେ ଯାଅ । ବୁଢ଼ୀ ପଇସା ମାଗିଲାରୁ ବାବୁ ଧମକାଇ ଦେଲେ । କହିଲେ— "ଯାଅ, ଯାଅ । ଅମୃତଭଣ୍ଡା'ଟାଏ ତ ବାଡ଼ିରେ ଫଳିଥିଲା । ତାଁ ଫେରେ ଲୋକେ ପଇସା ଦେଇ କିଣିବେ ?"

ଗାଁମାନଙ୍କରେ ପୁଲିସବାବୁଙ୍କୁ ନ ଡରେ କିଏ ? ବୁଢ଼ୀ ବିଚାରି କରେ କଅଣ ? ଘରେ ଚାଉଳ ନାହିଁ । ଏହିଅଟି କଥା ତାର ମନେ ପଡ଼ିଲା । ସେ କାନ୍ଦକାନ୍ଦ ହୋଇ ଠିଆ ହେଲା । ବାବୁ ପୁଣି ବେଜାର ହୋଇ କହିଲେ, "ଅଗ୍ଲ ଯା, ଆଉ ଅମୃତଭଣ୍ଡାଟି ଯେତେ ଦାମରେ ବିକିବୁ ମୋଠୁଁ ଆସି ସେତିକି ନେଇଯିବୁ ।"

ବୁଢ଼ୀ ନିରାଶ ହୋଇ ବାହାରିଗଲା । ଆଖିରୁ ଲୁହ ବହୁ ଯାଉଥାଏ । ବୁଢ଼ୀ ସଡ଼କେ ସଡ଼କେ ବଜାର ଅରମୁଣ୍ଡିକୁ ଚାଲିବାରେ ଲାଗିଲା ।

ଇଜରଟନ୍ ବୋଲି ଜଣେ ସାହେବ ସେତେବେଳେ ବାଲେଶ୍ବରରେ ଜିଲା ମେଜେଷ୍ଟର ଥାନ୍ତି । ସାହେବଟି ଭାରି ଭଲ । ଗରିବ ଗୁରୁବାଙ୍କ କଥା ଖୁବ୍ ବୁଝନ୍ତି । ସେ ବାଇସାଇକଲ ବା ଟମ୍‌ଟମ୍- ଗାଡ଼ିରେ ଚଢ଼ି, ଗାଁ ହାଟ ବଜାର ସବୁ ବେଳେବେଳେ ବୁଲି

ଦେଖଥାନ୍ତି । ସେଦିନ ଦୈବକ୍ରମେ ସେ ସେହି ସଡ଼କରେ ଶୁନଗାଡ଼ିରେ ଯାଉଥିଲେ । ବୁଢ଼ୀଟି ତାଙ୍କ ଆଖିରେ ପଡ଼ିଲା ।



ସାହେବ ଗାଡ଼ିରୁ ଓହ୍ଲାଇ ପଡ଼ିଲେ । ସେ ସାହେବ ଓଡ଼ିଆ ଭାଷା ଭଲ ଜାଣିଥିଲେ । ପଚାରିଲେ, "ବୁଢ଼ି, ତୁ କାନ୍ଦୁଛୁ କାହିଁକି ?" ବୁଢ଼ୀ ଡରି ଯାଉଥିଲା । ସାହେବଙ୍କଠାରୁ ଆଶ୍ୱାସନା ପାଇ କହିଁ କହିଁ ହୋଇ କାନ୍ଦି କାନ୍ଦି ସକଳ କଥା କହିଲା ।

ସାହେବ କହିଲେ, "ଆଗ୍ଯ ହେଉ, ତୁ ମୋତେ ଅମୃତଭଣ୍ଡାଟି ବିକ୍। ଏଇ ନେ ଏ ଅମୃତଭଣ୍ଡାର ଦାମ୍।" ଏହା କହି ପକେଟରୁ ଖଣ୍ଡେ ଦଶଟଙ୍କିଆ ନୋଟ କାଢ଼ି ବୁଢ଼ୀ ହାତକୁ ବଢ଼ାଇ ଦେଲେ। ବୁଢ଼ୀ ଏହା ଦେଖି ଅବାକ୍ ହୋଇଗଲା। ତାକୁ ବ ଠିକ୍ ଏ ଡର ମାଡ଼ିଲା। ସେ କିଛି ବୁଝି ପାରିଲା ନାହିଁ।

ସାହେବ ସେଠାରୁ କହିଲେ, "ଯାଅ, ମୁନ୍‌ସି ବାବୁଙ୍କୁ କହିବୁ, ମୁଁ ଆଉ ଅମୃତଭଣ୍ଡାଟି ବିକ୍କ ଏଇ ଦଶଟଙ୍କା ପାଇଛୁ। ତୁମେ ତ କହିଥିଲ, ତୁମେ ଯେଉଁ ଅମୃତଭଣ୍ଡାଟି ନେଇଥିଲ ତାର ତେବେ ଦାମ୍ ଏବେ ଦଶଟଙ୍କା ଦିଅ।"

ବୁଢ଼ୀ ଏହା ଶୁଣି ଥାନା ଆଡ଼କୁ ଲେଉଟିଲା। ବଜାରକୁ ସାହେବ ଆସିଥିବା କଥା ମୁନ୍‌ସିବାବୁ ସେତେବେଳକୁ ଶୁଣି ସାରିଲେଣି। ବୁଢ଼ୀ ଯାଇ ମୁନ୍‌ସିବାବୁଙ୍କୁ ଅମୃତଭଣ୍ଡାର ଦାମ୍ ମାଗିଲା। ମୁନ୍‌ସିବାବୁ ଏବେ ଆଉ କରନ୍ତୁ କଣ। ଠିକ୍ ଏ ଉପରକୁ ତଳକୁ ଗୁହିଁଲେ। ବାପର ସୁପୁଅ ହୋଇ ଏବେ ବୁଢ଼ୀ ହାତକୁ ଦଶଟି ଟଙ୍କା ବଢ଼ାଇ ଦେଲେ।

ବୁଢ଼ୀ ଯୋଡ଼ିଏ ଅମୃତଭଣ୍ଡାକୁ କୋଡ଼ିଏ ଟଙ୍କା ପାଇ ଆନନ୍ଦରେ ଘରକୁ ଗଲା।

ପ୍ରଶ୍ନ— ୧। ବାବୁ ଧମକାଇ ଦେଲେ; କାନ୍ଦ କାନ୍ଦ ହୋଇ; ବେକାର ହୋଇ କହିଲେ; ଗଦ୍‌ଗଦ ଗୁରୁବା; ଅବାକ୍ ହୋଇ ଗଲେ; ବାପର ସୁପୁଅ ହୋଇ; ଏହାର ଅର୍ଥ କଣ ?

୨। ତୁମ ଭିତରୁ ଜଣେ ପିଲ୍ଲ ମେଜେଷ୍ଟ୍ରର, ଆଉ ଜଣେ ବୁଢ଼ୀ ହୋଇ କଥାବାର୍ତ୍ତା କୁହ।

୩ । ମୁନସିବାବୁ ଗୋଟାଏ ଅମୃତଭଣ୍ଡାକୁ କାହିଁକି ଦଶ ଟଙ୍କା ଦେଲେ ?

---

## ଶିବେଇ ସାଆନ୍ତାଙ୍କ ଦେଉଳ ତୋଳା

ଏଇ ଓଡ଼ିଶାର ସମୁଦ୍ରକୂଳେ ପୁରୀଠାରୁ କୋଡ଼ିଏ ମାଇଲ ଉତ୍ତର ଆଡ଼କୁ କୋଣାର୍କ ଅଛି । ଏହି କୋଣାର୍କ ନାଁଟି ସମସ୍ତେ ଶୁଣିଥିବ । ଏଠାରେ ଏବକାଳର ଜଗନ୍ନାଥଙ୍କ ଦେଉଳ ମୁଖଶାଳା ଓ ବେଢ଼ା ପାଚେରି ପରି ଆଗେ ସବୁ ଥିଲା । ଏବେ ଦେଉଳଟି ଭାଙ୍ଗି ପଡ଼ୁଛି । ବେଢ଼ା ପାଚେରି ଭାଙ୍ଗିଯାଇ ଠାଏ ଠାଏ ଭଙ୍ଗା ହୋଇ ବାଲି ଉପରକୁ ଦିଶୁଛି । ମୁଖଶାଳାର ଉପର ଚକ କଳସ ନାହିଁ । ମୁଖଶାଳା ମଧ୍ୟ ଭାଙ୍ଗି ପଡ଼ନ୍ତାଣି । ମାତ୍ର ତା ମଧରେ ବାଲି ଭର୍ତ୍ତି କରି ତା' ଦ୍ୱାରଯାକ ବନ୍ଦ କରି ତାକୁ ରଖାଯାଇଛି

ଜଗନ୍ନାଥଙ୍କ ଦେଉଳ ହେଲା ଉତ୍ତାରୁ କୋଣାର୍କ ଦେଉଳ ତିଆରି ହୋଇଥିଲା । ଜଗନ୍ନାଥଙ୍କ ଦେଉଳ ସେହିପରି ଠିଆ ହୋଇଛି, କୋଣାର୍କ ଦେଉଳ ଭାଙ୍ଗିଗଲାଣି କାହିଁକି ?

ଲୋକେ କହନ୍ତି, ଏବେ କୋଣାର୍କ ଦେଉଳ ଯେଉଁଠାରେ ଅଛି ଆଗେ ସେହିଠାରେ ଗୋଟିଏ ନଈ ଥିଲା । ସେଇ ନଈକୁ ଚନ୍ଦ୍ରଭାଗା ବୋଲି କହୁଥିଲେ । ସୂର୍ଯ୍ୟଦେବତା ସେହି ଚନ୍ଦ୍ରଭାଗା-ଠାରେ ଲୋକଙ୍କ ଠାରୁ ପୂଜା ନେଉଥିଲେ । ସେଥିପାଇଁ ଓଡ଼ିଶାର ମହାରାଜା ନରସିଂହ ଦେବ ସେହି ଚନ୍ଦ୍ରଭାଗା ନଦୀ ଉପରେ ସୂର୍ଯ୍ୟ ଦେବତାଙ୍କ ପାଇଁ ଗୋଟିଏ ଦେଉଳ ତୋଳାଇବାକୁ ଠିକ୍ କଲେ ।

ଶିବେଇ ସାଆନ୍ତା ସେତେବେଳର ଓଡ଼ିଶା ମହାରାଜାଙ୍କ ବାରିକମିସ୍ତ୍ରୀ ଥିଲେ । ଶିବେଇ ସାଆନ୍ତାଙ୍କୁ ମହାରାଜ ନରସିଂହ ଦେବ ଡକାଇ ଚନ୍ଦ୍ରଭାଗା ନଈ ଭିତରେ କୋଣାର୍କ ଦେଉଳ ତୋଳିବା ପାଇଁ ବରାଦ କରି ଦେଲେ ।

ଶିବେଇ ସାଆନ୍ତା ଯେତେ ଜାଣିବାର ବାରିକ ମିସ୍ତ୍ରୀ ହେଲେ ମଧ ଗହୀରିଆ ନଈର ସୁଅ ଭିତରେ କପର ଦେଉଳ ତୋଳିବେ ବୁଝି ପାରିଲେ ନାହିଁ । ମହାରାଜା ଶିବେଇ ସାଆନ୍ତାଙ୍କ କହିଲେ, "ଦେଉଳରେ କେତେ ଧନ ଲାଗିବ, କେତେ ଖର୍ଚ୍ଚ ହେବ, ସେସବୁର ଆଗତୁରା ହିସାବ ଦିଅ ?"

ଶିବେଇ ସାଆନ୍ତା କହିଲେ, "ମହାରାଜ, ପାଣିରେ ମୂଳଦୁଆ ପକାଇ ଦେଉଳ ତୋଳିବ । ସେଥିରେ କେତେ ଧନ ଲାଗିବ, କେତେ ଧନ ଲାଗିବ ତାହା ଏବେ କପର କହିବ ? ମୂଳଦୁଆ ପଡ଼ିସାରିଲେ ଯାଇ ସେକଥା ପଚାରିବେ ।"

ମହାରାଜା କହିଲେ, "ଆଚ୍ଛା ତେବେ ସେଇଆ ହେବ ।"

ଶିବେଇ ସାଆନ୍ତା ଭୁବନେଶ୍ୱର, ନରାଜ ଓ ଆଉ ଆଉ ଥାନରୁ ନଈରେ ବଡ଼ବଡ଼ ପଥରମାନ ବୋହି ଆଣି ମୂଳଦୁଆ ପକାଉଥାନ୍ତି । କିନ୍ତୁ ପଥର ସବୁ ସୁଅରେ ଠିକ୍ ହୋଇ ରହୁନଥାଏ, କି ମୂଳଦୁଆ ଉପରକୁ ଉଠୁ ନ ଥାଏ । ଏହିପରି ବହୁତ ପଥର ନଈ ପେଟରେ ଗଲା । ଏବେ ମଧ କୋଣାର୍କ ପାଖେ 'ପଥରଗଣ୍ଡ' ବୋଲି ଗୋଟିଏ ଯୋଡ଼ ଅଛି । ସେହି ଯୋଡ଼ ଭିତରୁ ବଡ଼ ବଡ଼ କଟା ପଥରମାନ ମିଳୁଛି ।

ଏହିପରି ପଥର ସବୁ ପାଣିରେ ଭାସିଯିବାରୁ ସାଆନ୍ତା ନିରାଶ ହେଲେ । ଜାଣିବା ଶୁଣିବା ଲୋକଙ୍କୁ ପଚାରିବାକୁ, ଭଲ ଭଲ

ଦେଉଳ ତୋଳା ପୁସ୍ତକ ଖୋଜି ଦେଖିବାକୁ ସେ ସେତେବେଳେ ଗାଁ ଗାଁ ହୋଇ ବୁଲୁଥାନ୍ତି ।

ଏହାପରେ ବୁଲୁବୁଲୁ ଦିନେ ଦ'ପହରେ ଯାଇ ଗୋଟିଏ ବୁଢ଼ୀ ଦୁଆରେ ଅଶ୍ରା ନେଲେ । ତାଙ୍କୁ ଭାରି ଭୋକ ଶୋଷ କରୁଥିଲା । ବୁଢ଼ୀ ସେଦିନ ଟିକିଏ ଯାଉ କରୁଥିଲା । ସାଆନ୍ତାଙ୍କୁ କହିଲା, "ବାପ, ଖାଇବାକୁ ଡେରି ହେବ । ଏବେ ତୁମକୁ ଭାରି ବାଧୁଛି । ମୁଁ ଯାଉ କରୁଛି, ଟିକିଏ ଦଉଛି ଖାଇଦିଅ ।"

ବୁଢ଼ୀ ଥାଳରେ ଯାଉ ଅଣି ବାଢ଼ି ଦେଲା । ସାଆନ୍ତାଙ୍କ ପେଟ ଜଳୁଛି । ସାଆନ୍ତା ଭୁସ୍‌କିନା ଥାଳ ମଝିରେ ହାତ ପୁରାଇ ଦେଲେ । ହାତ ପୋଡ଼ିଗଲା । ସାଆନ୍ତା ଛଟ୍‌ଛଟ୍ ହୋଇଗଲେ ।

ବୁଢ଼ୀ ଗୁହିଁଥିଲା । ହସି ହସି କହିଲା, "ଏ କଣମ ପୁଅ, ଶିବେଇ ସାଆନ୍ତା ଦେଉଳ ତୋଳିଲାପରି ଥାଳ ମଝିରେ କିଆଁ ହାତ ପୂରେଇଛ ମ ? ଗୋଟିଏ ପାଖରୁ ଖାଇଲେ ସିନା ହବ ।"

ସାଆନ୍ତା ଚମକି ପଡ଼ିଲେ । ବୁଝିଲେ ବୁଢ଼ୀ ସତ କହୁଛି । ନଈ ମଝିରେ ମୂଳଦୁଆ ନ ପକାଇ କୂଳରୁ ପଥର ବାନ୍ଧିଗଲେ କାମ ହୋଇଯିବ ।

ସେ ବୁଢ଼ୀକୁ ଶରଧା ନ ଦେଇ ଗୁଲିଗଲେ । ଅଳ୍ପଦିନରେ କୋଣାର୍କର ମୂଳଦୁଆ ପଡ଼ିଗଲା ।

ପ୍ରଶ୍ନ—୧ । କୋଣାର୍କ ଦେଉଳ ନଈ ଭିତରେ କାହିଁକି ତୋଳା ହେଲା ?

୨ । ଶିବେଇ ସାଆନ୍ତା ବୁଢ଼ୀ ପାଖରୁ କଣ ଜ୍ଞାନ ପାଇଲେ ?

୩ । ମୂଳଦୁଆ, ଦେଉଳ, ମୁଖଶାଳା, ବେଢ଼ାପାଚେରି, ଚକ୍ର, କଳଶ, ବାହିକ ମିସ୍ତ୍ରୀ—ଏହା କଣ ବୁଝିଛ କି ? ଅର୍ଥ ବୁଝାଇ କରି ଲେଖ ।

---

## ଗଛ କଅଣ ଖାଏ ?

ଏକେତେ ତ ଗଛ ଗୁଡ଼ିଆଡ଼େ ଦେଖୁଥାଉଁ, ଗଛ କିପରି ଥାଏ ? ବଡ଼ ବଡ଼ ଗଛ ଦେଖ । ଆମ୍ବଗଛ, ବରଗଛ, ଏ ସବୁ ଗଛର ଡାଳ ପାଖ ଭୂଇଁ ଭିତରେ ଥାଏ । ତାକୁ କହନ୍ତି ଚେର । ଚେର ଶିର ଶିର ହୋଇ ଭୂଇଁ ଭିତରେ ପଶି ଯାଇଥାଏ ।

ଗଛର ଡାଳ ଯେପରି ଶିର ଶିର ହୋଇ ମେଲି ହୋଇଯାଇ-ଥାଏ, ଭୂଇଁ ଭିତରେ ଚେର ସେହିପରି ମେଲି ଯାଇଥାଏ ।

ତା ଉପରୁ ଗଛର ଗଣ୍ଡି, ସେଥିରେ ଡାଳ ନ ଥାଏ । ତା ଉପରକୁ ଡାଳ ମେଲାଇ ହୋଇ ଥାଏ । ଡାଳରେ ପତର ଥାଏ । ଗଛ ଚେର ବାଟେ ଭୂଇଁରୁ ରସ ଟାଣେ ।

ଲୋକେ ଭାବୁଥନ୍ତି, ଖାଲି ଭୂଇଁରୁ ରସ ଟାଣି ଗଛଟି ବଢ଼େ । ଭୂଇଁରୁ ରସ ଟାଣିଲେ ଡାଳରେ ପତର ଫିଟେ । କିନ୍ତୁ ତାହା ନୁହେ । ଗଛ ପତବାଟେ ପବନରୁ ଖାଏ ।

ପତ ହେଉଛି ଗଛର ମୁହଁ ପରି। ପବନରୁ ଖାଇ ଗଛ କାଠ ତିଆରି କରେ ।

ଭୂଇଁରୁ ଚେରବାଟେ ରସ ନିଏ ସତ, କିନ୍ତୁ ସେ ରସ ଅତି ଅଳ୍ପ । ଭୂଇରୁ ଖାଲି ଚେରବାଟେ ଗଛ ପାଣି ନିଏ ।

ଗୋଟାଏ ଡାଳଗଛର ଚେର, ଗଣ୍ଡି, ପତ୍ର ସବୁ କାଟି ଶୁଖାଇଦିଅ । ତାକୁ ନିଆଁ ଲଗାଇ ସବୁ ପୋଡ଼ି ପାଉଁଶ କରିଦିଅ । ଖାଲି ମୁଠାଏ ଧଳା ପାଉଁଶ ପଡ଼ି ରହିବ । ବାକି ସବୁ କୁଆଡ଼େ ଉଡ଼ିଯିବ ।

ଯେଉଁ ଧଳା ପାଉଁଶ ମୁଠାକ ପଡ଼ି ରହିଲା, ଗଛଟି ଚେରବାଟେ ସେଇତକ ଭୂମିରୁ ଖାଇଥିଲା । ବାକି ଯାହା ଉଡ଼ି ପବନରେ ମିଶିଗଲା, ସେତକଯାକ ପତ୍ରବାଟେ ଗଛ ପବନରୁ ଖାଇଥିଲା ।

ଗଛଟି ଶୁଖାଇ ପୋଡ଼ିଦେଲେ ଏହିପରି ପାଣି ଶୁଖିଯାଏ । ପବନରୁ ଆସିଥିବା ଜିନିଷ ପୋଡ଼ି ଉଡ଼ିଯାଏ । ମାଟିରୁ ଆସିଥିବା ଜିନିଷ ପାଉଁଶ ହୋଇ ମାଟିରେ ପଡ଼ି ରହେ ।

ଗଛଟି ଶୁଖାଇ ଦେଲେ ସବୁ ପାଣି ଉଡ଼ି ଯାଇ ନ ଥାଏ । ଶୁଖିଲା କାଠକୁ ପୋଡ଼ି ଦେଲେ ଅଙ୍ଗାର ହୁଏ ।

ବଣିଆଁ ଯେଉଁ ଅଙ୍ଗାର ଜାଳି ସୁନାରୁପା ତରଳାନ୍ତି, ପୋଡ଼ନ୍ତି ସେ ଅଙ୍ଗାର ଦେଖିଥିବ । କାଠକୁ ନିଆଁ ତାତରେ ସବୁ ପାଣି ଉଡ଼ିଗଲେ ସେଇ ଅଙ୍ଗାର ହୁଏ । ସେ ଅଙ୍ଗାରକୁ ଜାଳିଦେଲେ ଧଳା ପାଉଁଶ ବାହାରେ ।

ନଈରେ ଦଳ ଦେଖିଥିବ । ଦଳ ପାଣି ମଇଳାରୁ ଟିକିଏ କଅଣ ମାଟି ଜିନିଷ ଖାଏ କି ନ ଖାଏ, ବାକି ସବୁ ପବନରୁ ଖାଇ ବଢ଼େ ।

ପାଣି ସେଥିରେ ବହୁତ ଥାଏ । ସେଥିପାଇଁ ଶଗଡ଼େ ଦଳ ଶୁଖାଇ ପୋଡ଼ି ଦେଲେ ମୁଠାଏ ପାଉଁଶ ବି ବାହାରେ ନାହିଁ । ସବୁ ଅଙ୍ଗାର ହୋଇ ଜଳିଯାଏ ।

ପ୍ରଶ୍ନ—୧ । ଗଛ କେଉଁଠାରୁ କଅଣ ଖାଏ ?

୨ । ଅଙ୍ଗାର କଅଣ ? ପାଉଁଶ କଅଣ ?

୩। ଦଳ ଖୁଆଇ ପୋଷିଲେ କାହାଁକୁ ବେଶି ଯାଇଁଶ
ବାହାରେ ନାହିଁ ?

---

## ସିଦ୍ଧାର୍ଥ ଓ ହଂସ

ସିଦ୍ଧାର୍ଥ ବଗିଚ୍ଚ ଘରେ
ବସିଥିଲେ ଦିନେ,
ଉଡ଼ି ଯାଉଥିଲେ ହଂସ
କେତେ ସେ ଗଗନେ ।
ବୁଡ଼ି ଯାଉଥିଲା ରବି
ସଞ୍ଜବେଳ ଥାଇ
ଆସୁଥିଲା ପଶ୍ଚିମରୁ
ଘୋଡ଼ାଇ ଘୋଡ଼ାଇ ।
ଗୁହୁଁ ହଂସଟିଏ ଆସି
ପଡ଼ିଗଲା ତଳେ,
ଡେଣାରେ ବାଜିଛି ଶର
ଗୃହେଁ ସେ ଢକଲେ ।
ସିଦ୍ଧାର୍ଥ ଛୁଟିଗଲେ, ନେଲେ
ହଂସକୁ କୁଣ୍ଢାଇ,
ଶର କାଢ଼ି ଫାଡ଼ି ହାତ
ଦେଲେ ସେ ବୁଲାଇ ।
ହଂସର ରକତ ଧାରେ
ଢାଳି ଲୁହ ଧାର,
କହିଁ କହିଁ ହୋଇ କେତେ
କାନ୍ଦିଲେ କୁମାର ।

ଧନୁଶର ହାତେ ଧରି
ସିଦ୍ଧାର୍ଥଙ୍କ ଭାଇ
ଦେବଦତ୍ତ ଏବେ ଆସି
ମିଳିଗଲେ ତହିଁ ।
କହିଲେ, "ସିଦ୍ଧାର୍ଥ, ହଂସ
ଫେରାଇଦିଅ ମୋର,
ମୁହିଁ ପରା ଏ ହଂସକୁ
ବିନ୍ଧିଅଛି ଶର ।"
ସିଦ୍ଧାର୍ଥ କହିଲେ, "ଏ ତ
ବଡ଼ ଉଲଟା,
ସତ କହୁଛ କି ଭାଇ,
କରୁଅଛ ଥଟ୍ଟା ?
ମାରିଲା ଯେ ହଂସଟିକୁ
ହଂସ ହେବ ତାର ?
ବଞ୍ଚାଇ ରଖିଲା ଯେହୁ
ହୋଇବ ସେ ପର ?
ନିଅ ଶାକ୍ୟ ରାଜ୍ୟ, ନାହିଁ
ତହିଁ ମୋର ଲୋଡ଼ା,
ହଂସଟିକୁ ନ କରିବି
କେବେ ହାତ ଛଡ଼ା ।"
ଶିକାରୀ ସେ ଦେବଦତ୍ତ
ରହିଗଲେ ଚୁହିଁ,
ମୁଣ୍ଡ ପୋତି ଗଲେ ଚାଲି
କିଛିହିଁ ନ କହି ।

ପ୍ରଶ୍ନ—୧ । ସଞ୍ଜବେଳେ ଅନ୍ଧାର୍ହୁଅଡ଼ୁ ମାଡ଼ିଆସେ , କାହିଁକି ? ଆଜ ସୂର୍ଯ୍ୟ ଅସ୍ତ ହେଉଥିବାବେଳେ ଦେଖି ବୁଝ ।

୨ । ଗଗନ, ଝାଡ଼ି, ସୃଜ୍ୟ, ଶିକାରି, ହାତଛଡ଼ା—ଏହାର ଅର୍ଥ ଲେଖ ।

୩ । ଦେବଦତ୍ତ କଣ ବୋଲି ହଂସ ମାଗିଲେ ? ସିଦ୍ଧାର୍ଥ କଣ ଉତ୍ତର ଦେଲେ ?

---

## ବାଘ କଥା

( ୧ )

ଓଡ଼ିଶା'ର ଗଡ଼ଜାତ ସବୁ ଜଙ୍ଗଲ ମୂଲକ । ସେଠାରେ ବଣ ଝାଡ଼ି ବହୁତ । ସେ ବଣରେ ବହୁତ ବାଘ ଥାଆନ୍ତି ।

ବଣ ଭିତରେ ଗଛ ପତ୍ର କାଟି, ସଫା କରି ଲୋକେ ବିଲ କରିଥାନ୍ତି । ବିଲପାଖେ ଖଣ୍ଡିଏ ଖଣ୍ଡିଏ ଗାଁ କରି ଘର କରି ରହି-ଥାଆନ୍ତି ।

ତାଙ୍କ ଘରପାଖେ ବେଳେ ବେଳେ ବଣରୁ ବାଘ ବାହାରି ଦିନ ଦିପହରେ ବିଲରେ ଚରୁଥିବା ଗାଈ ଛେଳିଙ୍କୁ ଟେକି ନେଇଯାଏ ।

ସେଠା ଲୋକେ ବାଘକୁ ଡରନ୍ତି ନାହିଁ । କଲସ୍ପତିରିଆ ବାଘକୁ ତ ଖାତିର କରନ୍ତି ନାହିଁ । ମହାବଳ ଦେଖିଲେ ମଧ୍ୟ ଡାଙ୍ଗ ଧରି ଠିଆ ହୁଅନ୍ତି

ରାତିରେ କେବେ କେବେ ଗାଁ ଭିତରକୁ ବାଘ ଆସେ ଗୁହାଳ ଦୁଆର ମେଲା ଥିଲେ, ଗୁହାଳରେ ପଶି ଗୋରୁ ମଇଁଷି ଘେନିଯାଏ ।

ବଣରେ ଥିବା ଲୋକେ ଅନେକ ବାଉଁଶ ଗୁଐଡ଼ରେ କାଠ ମୁହାଁଟି ଦେଇ ଦୁଆର କରିଥାନ୍ତି । ବାଘ ପାରିଲେ ଲେଡ଼ା ମାରି ସେ ଦୁଆର ଭାଙ୍ଗି ଘରେ ପଶିଯାଏ ।

ଥରେ ଗୋଟିଏ ଗାଁରେ ବାଘ ଆସି ଜଣକ ଗୁହାଳ ଘରେ ବହୁତ ଗୋରୁ ଥିବାର ଜାଣିଲା । ଗୁହାଳ ଚାରିପଟେ ବୁଲିଲା, ଦୁଆରେ ଲେଡ଼ା ମାରିଲା, କିଛି ହେଲା ନାହିଁ ।

ସେ ଗୁହାଳରେ ଗୋଟେ ନଳା ଥିଲା । ବାହାରେ ନଳା ମୁହଁରେ ବାଘ ବସି ନଳାବାଟେ ଲାଙ୍ଗୁଳ ପୁରାଇ ଦେଇ ଗୁହାଳ ଭିତରେ ଲାଙ୍ଗୁଳ ଅଗଟି ଛଟ ଛଟ କଲା । ଜନ୍ତୁ ତ ବାସନା ବାରନ୍ତି, ଗୋରୁଯାକ ବାସନାରୁ ତ ବାଘକୁ ଜାଣିଥିଲେ, ଏବେ ଲାଙ୍ଗୁଳ ଛଟ ଛଟ ହେବାର ଦେଖି ଖାଲି ଉଆଁ ମାଇଲେ ।

ଗୁହାଳ ଭିତରେ ଦୁମ୍ ଦାମ୍ ଶୁଭିଲା । ଯାହାଙ୍କର ଗୁହାଳ ସେ ତିନୋଟି ଭାଇ । ସାନ ଭାଇଟି ଉଠିଆସି ଜଳାବାଟେ ଝାଙ୍କିଲା । ଦେଖିଲା, ଗୁହାଳ ନଳା ମୁହଁରେ ବାଘ ବସିଛି । ଗୋରୁଯାକ ଭିତରେ ଛଟ ପଟ ହେଉଛନ୍ତି ।

ସେ ଆଉ ଦି' ଭାଇଙ୍କି ଡାକିଲା । ସମସ୍ତେ ଦେଖିଲେ, କଥାଟା ବୁଝି ନେଲେ, ତାଙ୍କୁ ଭାରି ଖୁସି ଲାଗିଲା ।

ଜଣେ କହିଲା, "ଭାଇ, ଏ ବାଘକୁ ପାଗ ଦବା । ଇଏ ଆଜି ଆସିଲାଣି, ନିତି ଆସିବ ।"

ତହିଆର ଦିନ ବାଘ ସେହିପରି କଲା । ତହିଁଆର ଦିନକୁ ସବୁ ଭାଇ ଯାକ ବିଚାର କରି ସବା ସାନ ଭାଇକି ଗୁହାଳରେ ରଖିଦେଲେ । ଆଉ ଦୁଇ ଭାଇ ଯାକ ଠେଙ୍ଗା ଧରି ଘରେ ଗୁହିଁ ବସିଲେ ।

ବାଘ ଆସି ଗୁହାଳ ନଳାରେ ଲଙ୍ଗଳ ଉର୍ଦ୍ଧିକରି ଛଟ ଛଟ କଲା ବେଳକୁ ସାନ ଭାଇ ଲଙ୍ଗଳକୁ ଧରି ହାତରେ ଭିନ ସରି ଘୁଞ୍ଚାଇ ଦେଇ କାନ୍ଥକୁ ଗୋଡ଼ ଦେଇ ପ୍ରାଣପଣେ ଓଟାରି ଧଇଲା। ବାଘ ରଡ଼ି ଛାଡ଼ିଲା । ଏଣେ ସାନ ଭାଇ ବି ଆଉ ଭାଇମାନଙ୍କୁ ଡାକ ପକାଇଲା । ଢ଼'ଭାଇଯାକ ଠେଙ୍ଗା ଧରି ଘରୁ ଦଉଡ଼ି ଆସି ଦେ ବାଘକୁ ପାହାର । ପାହାର ଉପରେ ପାହାର ପଡ଼ିଲା । ବାଘ ରଡ଼ି କରୁଥାଏ । ଶୁଣୁଛ କିଏ ?

ଶେଷକୁ ବାଘ ଗୋଡ଼ଯାକ ମାଡ଼ରେ ଗୁଣ୍ଡା ହୋଇଗଲା, ମୁଣ୍ଡଟି ଛତୁ ହୋଇଗଲା ।

## ବାଳିକାର ସାହସ

## ( ୨ )

ଜଙ୍ଗଲରେ ଥିବା ଲୋକେ କାଠ ଅଣିବା ପାଇଁ ବଣକୁ ଯାଆନ୍ତି । ଯେତେବେଳେ ବଣରେ ବାଘ ମାତିଥାଏ, ତେତେବେଳେ କେତେ କେତେ ବେଳେ ସେଇ କାଠୁରିଆଙ୍କ ଭିତରୁ ଗୋଟିଏ ଗୋଟିଏ ନେଇ ଯାଏ । ଆଉମାନେ ହୋ ହୋ କରି କେବେ କେବେ ଲୋକଟାକୁ ଛଡ଼ାଇ ଆଣନ୍ତି । କେତେବେଳେ ଜୀଅନ୍ତା ମଣିଷ ଆଣନ୍ତି, କେତେବେଳେ ବା ମଢ଼ ଆଣନ୍ତି ।

ଥରେ ବାର ତେରଦ ବର୍ଷର ଗୋଟିଏ ଝିଅ ଆଉ ଲୋକଙ୍କ ସାଙ୍ଗେ କାଠ କରିବାକୁ ଯାଇଥିଲା, ବାଘ ଆସି ସେଇ ଝିଅଙ୍କୁ ଧଇଲା ।

ବାଘ ଧରିଲେ କଅଣ କରେ ଜାଣ ? ଅଗ ଗୋଡ଼ିରୁ ଗୋଟିକରେ ମଣିଷକୁ ଜାକି ଧରି ତିନ ଗୋଡ଼ରେ ତେଇଁ ତେଇଁ ନିର୍ଜନ ଜାଗାକୁ ଚାଲିଯାଏ । ସେଠାରେ ମଣିଷଟିକୁ ଥୋଇ ଦେଇ

ଗଣ୍ଡେଦୂରେ ଆସି ବସେ । ମଣିଷ ହଲଚଲ ହେଲେ ଖପ୍‌ଭିନ ଥରେ ଥରେ ମାଡ଼ି ବସୁଥାଏ । ଏହିପରି କେତେବେଳ ଖେଳସାରି ଶେଷକୁ ଛୋଟି କଣ୍ଟା କରି ରକ୍ତ ପିଏ ।



ତା ଉପରୁ ପରେ ସେ ଦନ ମାଂସ ଖାଏ, ତହିଁ ଆର ଦନ ଖାଏ, ମଢ଼-ପଡ଼ିଥିବା ଯାଗାକୁ ଖୋଜୁଥାଏ ।

ବାଘ ଆସି ଗୁହାଳ ନଳାରେ ଲାଙ୍ଗୁଳ ଭର୍ତ୍ତିକରି ଛଟ ଛଟ କଲା ବେଳକୁ ସାନ ଭାଇ ଲାଙ୍ଗୁଳକୁ ଧରି ହାତରେ ତିନି ସରି ଗୁଡ଼ାଇ ଦେଇ କାନ୍ଥକୁ ଗୋଡ଼ ଦେଇ ପ୍ରାଣପଣେ ଓଟାରି ଧରିଲା। ବାଘ ରଡ଼ି ଛାଡ଼ିଲା । ଏଣେ ସାନ ଭାଇ ବି ଆଉ ଭାଇମାନଙ୍କ ଡାକ ପକାଇଲା । ସେ'ଭାଇଯାକ ଠେଙ୍ଗା ଧରି ଘରୁ ଦଉଡ଼ି ଆସି ଦେ ବାଘକୁ ପାହାର । ପାହାର ଉପରେ ପାହାର ପଡ଼ିଲା । ବାଘ ରଡ଼ି କରୁଥାଏ । ଶୁଣୁଚ କିଏ ?

ଶେଷକୁ ବାଘ ଗୋଡ଼ଯାକ ମାଡ଼ରେ ଗୁଣ୍ଡା ହୋଇଗଲା, ମୁଣ୍ଡଟି ଛେଚି ହୋଇଗଲା ।

## ବାଳିକାର ସାହସ

( ୨ )

ଜଙ୍ଗଲରେ ଥିବା ଲୋକେ କାଠ ଆଣିବା ପାଇଁ ବଣକୁ ଯାଆନ୍ତି । ଯେତେବେ ବଣରେ ବାଘ ମାତିଥାଏ, ସେତେବେ କେତେ କେତେ ବେଳେ ସେଇ କାଠୁରିଆଙ୍କ ଭିତରୁ ଗୋଟିଏ ଗୋଟିଏ ନେଇ ଯାଏ । ଅନ୍ୟମାନେ ହୋ ହୋ କରି କେବେ କେବେ ଲୋକଟାକୁ ଛଡ଼ାଇ ଆଣନ୍ତି । କେତେବେଳେ ଜୀଅନ୍ତା ମଣିଷ ଆଣନ୍ତି, କେତେବେଳେ ବା ମଡ଼ା ଆଣନ୍ତି ।

ଥରେ ବାର ତେର ବର୍ଷର ଗୋଟିଏ ଝିଅ ଆଉ ଲୋକଙ୍କ ସାଙ୍ଗେ କାଠ କରିବାକୁ ଯାଇଥିଲା, ବାଘ ଆସି ସେଇ ଝିଅକୁ ଧରିଲା ।

ବାଘ ଧରିଲେ କଅଣ କରେ ଜାଣ ? ଆଗ ଗୋଡ଼ରୁ ଗୋଟିକରେ ମଣିଷକୁ ଜାକି ଧରି ତିନି ଗୋଡ଼ରେ ଡେଇଁ ଡେଇଁ ନିର୍ଜନ ଜାଗାକୁ ଚାଲିଯାଏ । ସେଠାରେ ମଣିଷଟିକୁ ଥୋଇ ଦେଇ

ଖଟେଣ୍ଡୁହୁଡ଼ରେ ଆସି ବସେ । ମଣିଷ ହଲଚଲ ହେଲେ ଖପ୍‌କିନା ଥରେ ଥରେ ମାଡ଼ି ବସୁଥାଏ । ଏହିପରି କେତେବେଳ ଖେଳସାରି ଶେଷକୁ ଛୋଟି କଣା କରି ରକତ ପିଏ ।



ଓ ଉଥିରୁ ପଟେର ସେ ଦିନ ମାଂସ ଖାଏ, ତହିଁ ଆର ଦିନ ଖାଏ, ମଡ଼ ପଡ଼ିଥିବା ଯାଏ ଖାଉଥାଏ ।

ଏ ଝିଅଟିକୁ ସେହିପରି ହାତରେ ଜାକି ତେଇଁ ତେଇଁ ଯାଉଥିଲା । ଝିଅ ମୁହଁଟି ବାଘ ମୁହଁ ପାଖକୁ ଥାଏ । ହାତ ଦୁଇଟି ଲମ୍ବି ପଡ଼ୁଥାଏ ।

ଦାଇବକୁ ଝିଅ ହାତରେ କାହୁଁ ଗୋଟିଏ ଲମ୍ବା କାଠ ଗୋଜା ପଡ଼ିଗଲା । ଝିଅଟି ତାକୁ ଧରି ପ୍ରାଣ ବିକଳରେ ସାଙ୍ଗେ ସାଙ୍ଗେ ବାଘ ନାକକୁ ଠାଣୁଆଁ କରି କେଞ୍ଚି ଦେଲା ।

କେଞ୍ଚାକ ଖାଇ ବାଘ ଚଞ୍ଚକରି ଝିଅଟାକୁ ଫିଙ୍ଗିଦେଇ ତେଇଁ ପଡ଼ି ଦୂରରେ ବସି ଦି' ଥର ଥରର ଛିଙ୍କିଲା ପରି ହେଲା ।

ଝିଅଟି ବ ଉଠି ବାଘଆଡ଼କୁ କାଠ ଗୋଜାଟି ଦେଖାଇ ଠିଆ ହେଲା ।

ବାଘ ଟିକିଏ ଚମକି ଉଠୁଥାଏ, ଝିଅ ଛା' ଆଡ଼କୁ କାଠ ଗୋଜାଟି ମାରି ଦେଲା ପରି ଦେଖାଇ ଦେଉଥାଏ । ଛା' ଦେଖି ବାଘ ଟିକିଏ ପଛକୁ ଘୁଞ୍ଚି ଯାଉଥାଏ ।

ଏହିପରି କେତେଥର ହେଲା ପରେ ବାଘ ତେଇଁ ପଡ଼ି କୁଆଡ଼େ ଗୁଲିଗଲା ।

ଝିଅଟି ଘଡ଼ିଏ ଖଣ୍ଡେ ଠିଆ ହୋଇ ଗୁରିଆଡ଼କୁ ଗୁହିଁଲା । ଏ ମଧ୍ୟରେ ଖୋଜିବା ଲୋକଙ୍କ ହୋ ହୋ ଶୁଭିଲା, ସେମାନେ ଝିଅଟିକୁ ପାଇଲେ । ସାଙ୍ଗରେ ଘରକୁ ଘେନି ଆସିଲେ ।

ପ୍ରଶ୍ନ—୧ । ଗଡ଼ଜାତ ଲୋକେ କାହିଁକି ବାଘକୁ ଡରନ୍ତି ନାହିଁ ?

୨ । କେଞ୍ଚା, କାଠ ମୁଣ୍ଡାଟି, କଲବଲପଡ଼ାଣିଆ ବାଘ, ମହାବଳ ବାଘ, ଉଣ୍ଡିଲା, ଛଟଛଟ କଲା, ପଟେ ଦକା, ଭଳଭଳ କରି, ଛଡ଼ୁ ହୋଇଗଲା—ଏହାର ଅର୍ଥ ବୁଝ । କଲବଲ-ପଡ଼ାଣିଆ ଦେଖିବାକୁ କିପରି ? ମହାବଳ ଦେଖିବାକୁ କିପରି ?

୩ । ବାଘ ଗୋରୁ ମାରିବାକୁ କି ସୁନ୍ଦର କରୁଥିଲା ? ଲୋକମାନେ କପରି କୌଶଳରେ ତାକୁ ମାରିଲେ ?
୪ । ଝିଅଟି କପରି ବାଘଠାରୁ ରକ୍ଷା ପାଇଲା ?

---

## ଚୂନ କଣ ?

ପିଲାଦିନେ ସମସ୍ତେ ଅମ୍ବକଷି ଖାଆନ୍ତି । ପିଲାଙ୍କ ଦାନ୍ତ ସଢ଼ିଯାଏ ନାହିଁ । କଞ୍ଚା, ଅମ୍ବିଲା ଅମ୍ବରେ ଲୁଣ ଲଙ୍କାମରିଚ ଦେଇ ଖାଇଲେ ସୁଆଦ ଲାଗେ ।

କେତେ ପିଲା ଅମ୍ବକୁ କାଟି ଦେଇ ତା ଉପରେ ଚୂନ ବୋଳି ଦିଅନ୍ତି । ଚୂନ ଲାଗିଲେ ଅମ୍ବ ଭାରି ମିଠା ହୋଇଯାଏ ।

ଖାଲି ଚୂନ ଜିଭରେ ଲାଗିଲେ ଘା ହୋଇଯାଏ । ଦେହରେ ଲାଗିଲେ ମଧ୍ୟ କେବେ କେବେ ଘା ହୋଇଯାଏ । ସବୁବେଳେ କାହିଁକି ହୁଏ ନାହିଁ ?

ଚୂନରେ ପବନ ଲାଗିଲେ ଚୂନ ଖଡ ହୋଇଯାଏ । କାନ୍ଥରେ ଯେଉଁ ଚୂନ ଲିପା ହୁଏ, କଞ୍ଚା ଥିବାବେଳେ ସେ ଚୂନ । ସେଥିରେ ସେତେବେଳେ ଜିଭ ମାରି ଦେଲେ ଜିଭ ଘା ହୋଇଯିବ । କିନ୍ତୁ ଲିପାଚୂନ ଶୁଖିଗଲେ ସେଥିରେ ଜିଭ ମାରିଲେ କିଛି ହୁଏ ନାହିଁ, କାହିଁକି ?

ଚୂନରେ ପବନ ବାଜି ସେ ଖଡ଼ି ହୋଇଯାଇଥାଏ ।

ଚୂନ କପରି ତିଆରି ହୁଏ ଜାଣ ?

ଯେଉଁ ଧୁଧଖଡ଼ିରେ ଗୁରୁଶାଳୀରେ ପାଠ ଲେଖ, ସେହି ଖଡ଼ିକୁ ନିଆଁରେ ପୋଡ଼ି ଦେଲେ ସେଥିରୁ ପବନ ଉଡ଼ିଯାଏ । ସେଇ ପୋଡ଼ା ଖଡ଼ିରେ ପାଣି ପକାଇ ଦେଲେ ସେ ତାତି ଯାଇ

ପଥର ଚୂନ ହୋଇଯାଏ । ପୁଣି ସେଇ ଚୂନ ଶୁଖିଗଲେ ସେଥିରେ ପଥର ମିଶିଯାଇ ସେ ଖଡ଼ ହୋଇଯାଏ ।

ଖଡ଼ କିପରି ହୁଏ ଜାଣ ?

ପାହାଡ଼ ଜାଗା ସବୁ ଖୋଳୁ ଖୋଳୁ ଖଡ଼ ପଥର ବାହାରେ । ପାହାଡ଼ ପରି ଗୋଟାଏ ଗୋଟାଏ ଖଡ଼ ଥାଏ । ତାକୁ ଭାଙ୍ଗି କରି ଆଣନ୍ତି ।

ଏଇ ଖଡ଼ ପାହାଡ଼ କେଉଁଠୁ ଆସେ ?

ବହୁକାଳ ତଳେ ଜମି ନ ଥିଲା । ସବୁ ସମୁଦ୍ର ଥିଲା । ସେଇ ସମୁଦ୍ର ପାଣିରେ ବହୁତ ଶାମୁକା ଥାଏ । ସେଇ ଶାମୁକା ଗୋଟିଏ ଜୀବ । ମରିଗଲେ ତାର ହାଡ଼କୁ ସିପ କହନ୍ତି ।

ସମୁଦ୍ର ତଳେ ଠାଏ ଠାଏ ସେଇ ଶାମୁକା ସବୁ ମରି ପାହାଡ଼ ପରି ସିପ ଜମା ହୋଇଥିଲା । ସମୁଦ୍ର ପାଣି ଶୁଖି ଯାଇ ଠାଏ ଠାଏ ଜମି ହୋଇଗଲା । ସେଇଠାରେ ସିପ ବାଲି ମିଶି ଜମାଟ ବାନ୍ଧି ପାହାଡ଼ ପରି ହୋଇଥିଲା ।

ଏବେ ବହୁକାଳପରେ ସେଇ ପାହାଡ଼ ସବୁ ଖଡ଼ [redacted] ହୋଇଛନ୍ତି । ପୁରୀ ଜିଲା ଭୁବନେଶ୍ୱର ପାଖେ ଏହିପରି ପାହାଡ଼[redacted] ଖଡ଼ ମିଳେ । ସବୁ ଖଡ଼ କେତେବେଳେ ନା କେତେବେଳେ ସମୁଦ୍ର ଭିତର ଶାମୁକାରୁ ତିଆରି ହୋଇଛି ।

ଖଡ଼ ପୋଡ଼ି ଚୂନ କରନ୍ତି । ସମୁଦ୍ର ସିପ ପୋଡ଼ି ଦେଲେ ମଧ୍ୟ ଭଲ ଚୂନ ହୁଏ । ପୁରୀ ପ୍ରଭୃତି ସମୁଦ୍ର କୂଳ ସ୍ଥାନରେ ସିପ ପୋଡ଼ି ସେଥିରୁ ଚୂନ କରନ୍ତି ।

ପ୍ରଶ୍ନ—୧ । ଖଡ଼ ପାହାଡ଼ ଓଡ଼ିଶାର କେଉଁଠାରେ ଅଛି ?

୨ । ଚୂନ କିପରି ହୁଏ ?

# ତୃଇଡଣି ପ୍ରଧାନ ଓଡ଼ିଆ

## ୧ । ବିଶ୍ୱନାଥ ମହାପାତ୍ର

ଏ ପ୍ରାୟ ଛଅଶ ବର୍ଷ ତଳର ଲୋକ । ପୁରୀ କିମ୍ବା ଯାଜପୁର ଅଞ୍ଚଳର କୌଣସି ବ୍ରାହ୍ମଣ ଶାସନରେ ଜନ୍ମ ହୋଇଥିଲେ । ଏ ଜଣେ ଧୁରନ୍ଧର ପଣ୍ଡିତ ଥିଲେ । ଭାରତବର୍ଷର ସବୁଆଡ଼େ ଲୋକେ ଏହାଙ୍କୁ ଜାଣିଥିଲେ । ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ସାହିତ୍ୟଦର୍ପଣ ବୋଲି ଖଣ୍ଡିଏ ଉତ୍କୃଷ୍ଟ ଗ୍ରନ୍ଥ ଅଛି । ବିଶ୍ୱନାଥ ସେହି ଗ୍ରନ୍ଥ ରଚନା କରିଥିଲେ । ସବୁ ସଂସ୍କୃତ ସାହିତ୍ୟର ଛାତ୍ରମାନେ ଏହି ଗ୍ରନ୍ଥ ଏବେ ପଢ଼ନ୍ତି । ଇଉରୋପ ଆମେରିକାରେ ମଧ୍ୟ ଏଇ ଗ୍ରନ୍ଥର ବଡ଼ ପ୍ରଶଂସା ।

ଯୁଦ୍ଧ, ସନ୍ଧି, ଶାସନ ପ୍ରଭୃତି ରାଜ୍ୟ ଚଳାଇବାର ବିଦ୍ୟାରେ ବିଶ୍ୱନାଥ ବଡ଼ ଜାଣିବାର ଲୋକ ଥିଲେ । ଓଡ଼ିଶାରୁ ଯାଇ ସବୁ ରାଜଧାନୀ ବୁଲି ବୁଲି ଏ କାଶ୍ମୀରର ଜମ୍ମୁ ରାଜ୍ୟରେ ସଭାପଣ୍ଡିତ ହୋଇଥିଲେ । କେତେଦିନ ସଭାପଣ୍ଡିତ ହେଲା ପରେ ଜମ୍ମୁ ମହାରାଜ ଏହାଙ୍କ ଗୁଣ ବୁଝିପାରି ଏହାଙ୍କୁ ରାଜ୍ୟର ସନ୍ଧି, ଯୁଦ୍ଧ ବିଭାଗର ମନ୍ତ୍ରୀ କରିଥିଲେ । ତେଣୁ ଏହାଙ୍କର ନାମ ହେଲା ମହାମହୋପାଧ୍ୟାୟ ସାନ୍ଧି-ବିଗ୍ରହିକ ବିଶ୍ୱନାଥ କବିରାଜ ମହାପାତ୍ର । ଏହି ନାମରେ ଏହାଙ୍କୁ ଏବେ ସମସ୍ତେ ଜାଣନ୍ତି । ମହାମହୋପାଧ୍ୟାୟ ବୋଇଲେ, ଅତି ବଡ଼ ଶିକ୍ଷକ । ସାନ୍ଧି ବିଗ୍ରହିକ ବୋଇଲେ, ରାଜ୍ୟର ଯୁଦ୍ଧ ସନ୍ଧି ବିଭାଗର ମନ୍ତ୍ରୀ । କବିରାଜ ବୋଇଲେ, ଶ୍ରେଷ୍ଠ କବି । ମହାପାତ୍ରଟି ଓଡ଼ିଶା ରାଜାଙ୍କ ବିଶେଷ ଉପାଧି । ଏହାର ଅର୍ଥ ଅତି ଶ୍ରେଷ୍ଠ ଯୋଗ୍ୟ ଲୋକ ।

## ୬ । ବୀରଭଦ୍ର ଦେବ

ଓଡ଼ିଶାର ସମ୍ରାଟ୍ ପୁରୁଷୋତ୍ତମ ଦେବ କାଞ୍ଚି ରାଜାଙ୍କ କନ୍ୟା ତାଙ୍କ ଜେମା ପଦ୍ମାବତୀଙ୍କୁ ରାଣୀ କରିଥିଲେ । ଏହି ପୁରୁଷୋତ୍ତମ ଦେବଙ୍କ ପୁତ୍ର ପ୍ରତାପରୁଦ୍ର ଦେବ । ପ୍ରତାପରୁଦ୍ର ଦେବଙ୍କ ସମୟରେ ଚୈତନ୍ୟ ପୁରୀରେ ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ । ପ୍ରତାପରୁଦ୍ର ବୈଷ୍ଣବ ହୋଇ ଯିବାରୁ ଯୁଦ୍ଧ କରି ସାମ୍ରାଜ୍ୟ ରକ୍ଷା କରିବା କାର୍ଯ୍ୟରେ ଆଉ ବେଶୀ ମନ ଦେଇ ନ ଥିଲେ । ସଙ୍ଗେ ସଙ୍ଗେ ଚାରିପାଖ ରାଜାମାନେ ଖଣ୍ଡେ ଖଣ୍ଡେ ରାଜ୍ୟ ମାଡ଼ି ଆସିଲେ । ମାନ୍ଦ୍ରାଜର ଦକ୍ଷିଣପଶ୍ଚିମ ବା ନୈଋତ କୋଣକୁ ପ୍ରାୟ ଶହେ ମାଇଲ ଦୂରରେ ଥିଲା ଉଦୟଗିରି ଦୁର୍ଗ । ସେହିଠାରେ ଦକ୍ଷିଣ ଓଡ଼ିଶା ସାମ୍ରାଜ୍ୟର ଶାସନ କେନ୍ଦ୍ର ଥିଲା । ଯୁବରାଜ ବୀରଭଦ୍ର ଦେବ ସେହି ଦୁର୍ଗର ସମ୍ରାଟ୍ ପ୍ରତିନିଧି ରୂପେ କାର୍ଯ୍ୟ କରୁଥିଲେ । ପ୍ରତାପରୁଦ୍ରଙ୍କ ରାଣୀ ବୀରଭଦ୍ରଙ୍କ ମା ସେଇଠାରେ ପୁଅଙ୍କ ପାଖେ ଥାନ୍ତି । ଦକ୍ଷିଣକୁ ସମୁଦ୍ର ଯାଏ ବିରାଟ ବିଜୟନଗର ବା ନରପତି-ସାମ୍ରାଜ୍ୟ ଲମ୍ବିଥାଏ । ଓଡ଼ିଶାର ସମ୍ରାଟ୍‌ଙ୍କୁ କହୁଥିଲେ ଗଜପତି । ନରପତି ସମ୍ରାଟ୍ ଗଜପତିଙ୍କ ଉଦୟଗିରି ଦୁର୍ଗ ଅଧିକାର କରି ବୀରଭଦ୍ର ଓ ତାହାଙ୍କ ଜନନୀଙ୍କୁ ବନ୍ଦୀ କରି ନେଲେ । ନରପତି ଶୁଣିଥିଲେ ବୀରଭଦ୍ର ଖଣ୍ଡା ଖେଳରେ ଭାରି ତାରିଫ୍ ଥିଲେ । ଦିନେ ବୀରଭଦ୍ରଙ୍କୁ ଡାକି ନରପତି ସଭାରେ ତାଙ୍କ ଖଣ୍ଡାଖେଳ ଦେଖିବେ ବୋଲି ଦିନ ବେଳ ଠିକ୍ କରି କହିଦେଲେ । ବୀରଭଦ୍ର ରାଜି ହେଲେ । ଠିକ୍ ଦିନ ଠିକ୍ ସମୟରେ ବୀରଭଦ୍ରଙ୍କୁ ସଭାରେ ହାଜର କରାଗଲା । ବୀରଭଦ୍ର ଖଣ୍ଡା ଧରି ଖେଳିବାପାଇଁ ଛିଡ଼ା ହେଲେ । କାହା ସଙ୍ଗେ ଖେଳିବେ ? ସଙ୍ଗରେ ଖେଳିବାପାଇଁ ନରପତି ନିଜର ଜଣେ ସାମାନ୍ୟ ସେନାପତିଙ୍କୁ ଠିକ୍ କରିଥିଲେ । ତାଙ୍କୁ ଦେଖି, ତାଙ୍କ ପରିଚୟ ନେଇସାରି, ବୀରଭଦ୍ର କହିଲେ,

"ମହାରାଜ ! ମୁଁ ମହାରାଜ-ପୁତ୍ର । ମହାରାଜା ବା ମହାରାଜ-ପୁତ୍ରଙ୍କ ସଙ୍ଗେ ଖେଳିବା ହିଁ ମୋର ବିଧି । ଅନ୍ୟ କାହା ସଙ୍ଗେ ଖଣ୍ଡା ଖେଳିଲେ ମୋ କୁଳର ଅପମାନ ହେବ ।"

ନରପତି ଅଳ୍ପ ହସି କହିଲେ, "ବନ୍ଦୀର ବିଧି ହେଉଛି, ତାକୁ ଜିଣିଥିବା ଲୋକର ଆଦେଶ ପାଳନ କରିବା । ଏଥିରେ ଅପମାନ କିଛି ନାହିଁ ।"

ବୀରଭଦ୍ର କିଛିକାଳ ଏକ ଦୃଷ୍ଟିରେ ନରପତିଙ୍କୁ ଚାହିଁଲେ । ତା' ପରେ କହିଲେ, "ବନ୍ଦୀ ମହାରାଜ-ପୁତ୍ରର ମାନ ଅପମାନ ନରପତିଙ୍କ ଭଳି ସମ୍ରାଟଙ୍କର ବୁଝିବା ସହଜ ନୁହେଁ । ଏହା ମୋର ଆଗରୁ ଜାଣିବା ଉଚିତ ଥିଲା । ମୋର ମାନ ମତେ ରଖିବାକୁ ହେବ ।" ଏହା କହିବା ସାଙ୍ଗେ ସାଙ୍ଗେ ହାତରେ ଥିବା ଦାହୁଆ ଖଣ୍ଡାଟି ଯୋରରେ ନିଜ ଛାତିରେ ବସାଇ ଦେଲେ । କହି ଉଠିଲେ, "ମହାରାଜ, ବନ୍ଦୀର ପ୍ରାଣ ତମ ହାତରେ । ମାନ ତମ ହାତରେ ନାହିଁ ।"

ପ୍ରଶ୍ନ—୧ । ମହାମହୋପାଧ୍ୟାୟ, ସାହିତ୍ୟଗ୍ରାହକ, କବିରାଜ, ମହାପାତ୍ର— ଏହାର ଅର୍ଥ କଣ ? ଆଜିକାଲି କବିରାଜ ଶବ୍ଦ ସାଧାରଣତଃ କେଉଁ ଅର୍ଥରେ ବ୍ୟବହାର ହେଉଛି ?

୨ । ବୀରଭଦ୍ର ଦେବ କାହିଁକି ଆପେ ନିଜ ଦେହରେ ଖଣ୍ଡା ମାରି ମଲେ ?

୩ । ଯୁବରାଜ, ମହାରାଜ, ସମ୍ରାଟ୍, ବନ୍ଦୀ, ନରପତି, ଗଜପତି, ବୈଷ୍ଣବ—ଏହାର ଅର୍ଥ କଣ ?

# ସାପୁଆ କେଳା

ଡାହାଣିଆ ଖରା ଗଲେ ବୁଡ଼ିବ ବେଳା
ଆସ ରେ ଦେଖିବା ପିଲେ ସାପୁଆ କେଳା
ଅଗଣାକରେ ପାଞ୍ଚ ପେଡ଼ି    ଆଣିଛି ଭାର ସଜାଡ଼ି
ବଡ଼ ସାନ କେତେ ସାପ କରିବେ ଖେଳା
ଖରା ଥାଉଁ ଥାଉଁ ଗୁଲ ନ କର ହେଳା ।

ଅହିରାଜ କାଢ଼ିବ ସେ ଅଠରହାତ
କୋଇଥିଆ ନାଗ ଏବେ ଛୁଡ଼ିବ କାତି
ଡମ୍ବା ସବୁ ଡମ୍ବମାନ    କେତେ ନାଗ ବଡ଼ ସାନ



ଗୁରିଆଡ଼େ ଫେଣ ଟେକି ଉଠିବେ ମାତ୍ର
ଖେଳାଇବ କେଳା ଏକା ପୁଙ୍ଗିର ଗୀତ ।

ଡୋଲ୍‌ଥିବ ପଦ୍ମତୋଳା ମୁହଁ ବୁଲାଇ
ପେଡ଼ି ଗୁଙ୍ଗୁଡ଼ିଏ ଦେଉଥିବ ହଲାଇ
ସମସ୍ତେ ମାରିବେ ଟେଁଟ କରିଥିବ ଦେହ କାଠ
ଚମକି ଚମକି କେତେ କରାବଡ଼ାଇ
ହଲ୍‌ଯାଇ ଟେଁଟ ଦେଉଥିବ ଏଡ଼ାଇ ।

ନାଗଟିଏ ଧର ତାଙ୍କ ଗୁଡ଼ାଉଥିବ
ଠିଆ ହୋଇ ଅହିରାଜ ଫଣା ଟେକିବ
ଏଅଡ଼େ ସେ ଆଡ଼େ ହୋଇ ଡମ୍ବ ଯିବେ ପଳାଇ
ଭୟଥିବେ ଲୋକେ କେଳା ସମ୍ଭାଳି ନେବ
ଛଟକେ ଛଟକେ ବୁଲି ଖେଳାଉଥିବ ।

ଗୁହଁ ସେ ଗୋଡ଼ରେ ତମ୍ବ ପାଙ୍କ ପରାଇ
ଅହିରାଜ ମୁହଁ ଧରି ଗେଲାଇ ହୋଇ
ପଦ୍ମତୋଳା ଡେଲି ଡୋଲି ଅହିରାଜ ନାଚେ ଭରି
ବୁଲିବ ପଇସା ମାଗି ସେଠି ଦେଖାଇ
ଆସ ରେ ଆସ ରେ ପିଲେ ସଅଳ ହୋଇ ।

ପ୍ରଶ୍ନ—୧ । ଦଶ ପ୍ରକାର ସାପର ନାମ କହ ।
୨ । ଅହିରାଜ ଅର୍ଥ କଅଣ ?

[illegible]

## ଭୀଷ୍ମ

ସେବକାଳେ ଶାନ୍ତନୁ ବୋଲି ହସ୍ତିନାର କୁରୁବଂଶରେ ଜଣେ ରାଜା ଥିଲେ । ସାନ୍ତନୁଙ୍କର ରାଣୀ ଗଙ୍ଗାଦେବୀ ଗୋଟିଏ ଶିଶୁ ପୁତ୍ର ଛାଡ଼ି ସ୍ୱର୍ଗକୁ ଯାଇଥିଲେ । ସେଇ ଶିଶୁ ପୁତ୍ରଟିର ନାମ ଦେବବ୍ରତ ।

ଶାନ୍ତନୁ ଚନ୍ଦ୍ରବଂଶର ରାଜା, ଦେଖିବାକୁ ଚନ୍ଦ୍ରପରି ଉଜ୍ଜ୍ୱଳ ଓ ସୁନ୍ଦର । ନିଜେ ଗଙ୍ଗାଦେବୀ ତାଙ୍କର ରାଣୀ । ଦେବବ୍ରତ ମଧ୍ୟ ଦେଖିବାକୁ ଅତି ସୁନ୍ଦର, ବୀର ପୁରୁଷ । କ୍ରମେ ଦେବବ୍ରତ ସବୁ ବିଦ୍ୟାରେ ପଣ୍ଡିତ ହୋଇଗଲେ । ସେ ଧନୁ ଶର ଧରି ଯୁଦ୍ଧକୁ ବାହାରିଲେ ସମସ୍ତେ ଡରି ଯାଉଥିଲେ ।

ସେକାଳେ ରାଜାମାନେ ବଣକୁ ଯାଇ ମୃଗୟା ବା ପାରିଧି କରୁଥିଲେ । ଶାନ୍ତନୁ ଏହିପରି ପାରିଧିରେ ଦିନେ ବଣରେ ବୁଲୁଥିଲେ, ନଈକୂଳେ ଦେଖିଲେ ଗୋଟିଏ ନାଆରେ କେଉଟ ଘାଟ ପାରି କରୁଛି । ସେଇ କେଉଟର ଗୋଟିଏ ଯୁବତୀ ଝିଅ ସେଇ ନାଆରେ ଥିଲା । ସାନ୍ତନୁଙ୍କର ପ୍ରାୟ ୨୦ ବର୍ଷ ହେଲା ରାଣୀ ନ ଥିଲା । ସେ ସେଇ କେଉଟ ଝିଅଟିକୁ ଦେଖି ବସିଲେ, ତାକୁ ରାଣୀ କରିବେ । କିନ୍ତୁ ମୁହଁ ଫିଟାଇ ଏକଥା କହିବେ କିପରି, କହିବେ ବା କାହାକୁ ? ଘରେ ୨୦ ବର୍ଷର ଯୁବରାଜ ଦେବବ୍ରତ । ସେ ଏ କଥା ଶୁଣିଲେ କଣ ବରିବେ ? ହେଲେହେଁ ରାଜାଙ୍କ ମନ ବଡ଼ ଅସ୍ଥିର ହେଉଥାଏ । ସେ ଗୁପ୍ତରେ ମନ୍ତ୍ରୀଙ୍କ ସଙ୍ଗେ ଏକଥା ଭାଳିଲେ । ମନ୍ତ୍ରୀ ମଧ୍ୟ ଶୁଣି ତୁନି ହେଲେ ।

ରାଜା ସେଇ କଥା ଭାଳୁଥାନ୍ତି । କ୍ରମେ ଆଉ ସବୁ କାମକୁ ତାଙ୍କ ମନ ଛାଡ଼ିଗଲା । ସେ କଥାବାର୍ତ୍ତାରେ [illegible] ବରଷ୍ଟା [illegible] ଲୋକେ କିଛି ବୁଝିପାରୁ ନ ଥାନ୍ତି । ଏହା ଦେଖି ଦେବବ୍ରତ ମଧ୍ୟ ବଡ଼

ଦୁଃଖିତ ହେଲେ । ଦେବବ୍ରତ ଦିନେ ମନ୍ତ୍ରୀଙ୍କୁ ତାଙ୍କ ସବୁକଥା ପଚାରୁ ପଚାରୁ ଜାଣିଲେ, କେଉଟ ଝିଅଟିକୁ ରାଣୀ କରି ଆଣିବାକୁ ରଜାଙ୍କର ମନ । ରଜା ସେକଥା ମୁହଁ ଫିଟାଇ କହିପାରୁ ନାହାନ୍ତି କି ସେ କଥାଟି ମନରୁ ଛାଡ଼ିଦେଇ ପାରୁ ନାହାନ୍ତି ।

ଦେବବ୍ରତ ମନ୍ତ୍ରୀଙ୍କୁ କହିଲେ, "ଏଇ କଥାକୁ ଏତେ ଚିନ୍ତା କାହିଁକି ? ଚାଲ, ଆମେ ଯାଇ ବାପାଙ୍କ ପାଇଁ କେଉଟର ସେ ଯୁବତୀ ଝିଅଟିକୁ ନେଇ ଆସିବା ।"

ଦେବବ୍ରତ କାଳେ କଣ ବିଗୁଡ଼ିବ ବୋଲି ତ ସେ କଥା କେହି ଇପାରୁ ନ ଥିଲେ । ଏବେ ମନ୍ତ୍ରୀ ଦେବବ୍ରତଙ୍କ ସଙ୍ଗେ ବଣକୁ ଯିବାପାଇଁ ରାଜି ହୋଇଗଲେ । ଦୁହେଁଯାକ ବଣକୁ ଯାଇ ସେଇ କେଉଟ ପାଖେ ପହଞ୍ଚିଲେ । କେଉଟ ଝିଅଟିର ନାମ ସତ୍ୟବତୀ । ଦେବବ୍ରତ ସତ୍ୟବତୀର ବାପାଙ୍କୁ କହିଲେ, "ତୁମେ ଝିଅଟିକୁ ଆମ ବାପାଙ୍କ ସହିତ ବିଭା କରିଦିଅ । ତୁମ ଝିଅ ରାଣୀ ହେବ ।"

କେଉଟ କହିଲେ, "ଦେବବ୍ରତ ! ତୁମେ ରାଜାଙ୍କର ଜ୍ୟେଷ୍ଠ ପୁତ୍ର । ତୁମେ ରାଜାଙ୍କ ଅନ୍ତେ ରାଜ୍ୟ ପାଇବ । ମୋ ଝିଅ ରାଣୀ ହେଲେ କଣ ଲାଭ ହେବ ? ମୋ ଝିଅର ପୁଅ ହେଲେ ସେ କଣ କରିବେ ? ତୁମେ ପଛକୁ ତାଙ୍କୁ ସବୁ ରାଜ୍ୟରୁ ତଡ଼ି ଦେବ ସିନା ! ମୁଁ ରାଜାଙ୍କୁ ଝିଅ ଦେବି ନାହିଁ ।"

ଦେବବ୍ରତ ବୀର ଯୁବକ, ସେ ସଙ୍ଗେ ସଙ୍ଗେ କହିଲେ, "କେବଟି, ତୁମେ ଭୟ କର ନାହିଁ । ମୁଁ ସତ୍ୟ କରୁଛି ମୁଁ ରାଜା ହେବି ନାହିଁ । ତୁମର ଝିଅର ପୁଅ ରାଜା ହେବେ ।" ସମସ୍ତେ ଜାଣୁଥିଲେ ମନୁଷ୍ୟ ସତ୍ୟ କଲେ ସେ ତାହା କରେ । ସେଥିରେ କାହାର ସନ୍ଦେହ ହେଉ ନ ଥିଲା । ହେଲେହେଁ କେଉଟର ମନ ମାନିଲା ନାହିଁ । କେଉଟ କହିଲା, "ଦେବବ୍ରତ, ତୁମେ ରାଜା ନ

ହେଲେ କଣ ହେଲା । ତୁମର ପୁଅ ହେଲେ, ସେ ତ ପୁଣି ମୋ ଝିଅର ପୁଅ ନାତିମାନଙ୍କୁ ତଡ଼ିଦେଇ ରାଜା ହେବେ ? ସେ ତ ବଡ଼ ପୁଅର ପୁଅ, ତାଙ୍କୁ ତ କେହି ମନା କରି ପାରିବ ନାହିଁ । ମୋ ଝିଅ ରାଣୀ ହେବାରେ ବହୁତ ଦୁଃଖ ଅଛି । ସେ କଥା ମତେ କହ ନାହିଁ ।"

ବୀର ଦେବବ୍ରତ ପୁଣି ପ୍ରତିଜ୍ଞା କରି କହିଲେ, "କୈବର୍ତ୍ତ, ମୁଁ ପୁଣି ସତ୍ୟ କରୁଛି ମୁଁ ବାହା ହେବି ନାହିଁ ।"

କଥା ଅଛି, ସେତିକିବେଳେ ଦେବବ୍ରତଙ୍କ ଉପରେ ଆକାଶରୁ ପୁଷ୍ପ ବୃଷ୍ଟି ହେଲା । ସମସ୍ତେ ଏହା ଶୁଣି ଦେବବ୍ରତଙ୍କୁ ଧନ୍ୟ ଧନ୍ୟ କଲେ । ଦେବବ୍ରତଙ୍କର ନାମ ସେଇଦିନ ଠାରୁ ହେଲା ଭୀଷ୍ମ, ଅର୍ଥାତ୍ ଭୟଙ୍କର । କାରଣ ସେ ଭୟଙ୍କର ସତ୍ୟ କରିଥିଲେ । ଏଭଳି ସତ୍ୟ କରିବାକୁ ଜଗତରେ ଲୋକେ ଭୟ କରନ୍ତି ବୋଲି ଏ ସତ୍ୟ ଭୟଙ୍କର ।

ପ୍ରଶ୍ନ—୧ । ମୁହଁ ଫିଟାଇ କହିବା, ମନ୍ତ୍ରୀଙ୍କ ସଙ୍ଗେ ଭେଟିଲେ, ଭୁଲ ହେଲେ, ମନ ଛାଡ଼ିଗଲା, ଦୁଃଖିତ ହେଲେ—ଏହିପରି ଆଉ ଶବ୍ଦ ତିଆରି କରି ନିଜର ବାକ୍ୟ ଗଢ଼ ।

୨ । ଦେବବ୍ରତ କାହିଁକି ବାହା ହେବେ ନାହିଁ ବୋଲି ପ୍ରତିଜ୍ଞା କଲେ ?

୩ । ସତ୍ୟବତୀଙ୍କର ପୁଅମାନଙ୍କ ନାମ କଣ ? ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିର ପ୍ରଭୃତିଙ୍କର ସତ୍ୟବତୀ କଣ ? ଏସବୁ ଶିକ୍ଷକଙ୍କଠାରୁ ବୁଝ ।

---

## ଆରୁଣି

ସେତେବେଳେ ଲୋକେ ପିଲାଙ୍କୁ ଗୁରୁଙ୍କ ଘରେ ପାଠ ପଢ଼ିବା ପାଇଁ ଛାଡ଼ି ଦେଉଥିଲେ । ଗୁରୁଙ୍କ ଘର ଗାଁ ଗଣ୍ଡା ଛଡ଼ା ସହରରେ

ନ ଥାଏ । ଗୁରୁ ବଣରେ କୁଡ଼ିଆ ଘର କରି ଥାଆନ୍ତି । ଯେଉଁ ପିଲାମାନେ ତାଙ୍କ ଘରେ ରହି ପଢ଼ନ୍ତି, ସେମାନେ ସକାଳୁ ଉଠି ଆଖ ପାଖ ଗାଁରେ ଭିକ ମାଗି ଆଣି ଗୁରୁଙ୍କୁ ଦିଅନ୍ତି । ସେଥିରେ ଖାଇବା ପିଇବା ଚଳିଯାଏ । ପୁଣି ବଣରେ ଜାଳ ଭାଙ୍ଗିବାଠାରୁ ଗୁରୁଙ୍କ ଗାଈ ଚରାଇବା, ବିଲରେ କାମ କରିବା ଇତ୍ୟାଦି ସବୁ କାମ ପିଲାମାନେ କରନ୍ତି । ଯେଉଁ ପିଲା କଥା ମାନି ଠିକ୍ କରି କାମ କରିପାରେ ତାରି ଏକା ପାଠ ହୋଇଗଲା ବୋଲି ବୁଝାଯାଏ ।

ଧୌମ୍ୟ ବୋଲି ଜଣେ ଋଷି ଥିଲେ । ତାଙ୍କ ଶିଷ୍ୟଙ୍କ ଭିତରେ ଆରୁଣି ବୋଲି ପିଲାଟିଏ ଥାଏ । ପିଲାଟି ସବୁ କାମକୁ ଆଗୁଆ । କୌଣସି କାମକୁ 'ପାରିବି ନାହିଁ' ବୋଲି କହେ ନାହିଁ । ପାଠ ବି ଭଲ ପଢ଼ୁଥାଏ ।

ଗୁରୁ ଦିନେ ସକାଳୁ ତାକୁ କହିଲେ, "ଆରୁଣି, ବଣ ସେପାଖେ ଆମର ଯେଉଁ ଧାନ ବିଲ ଅଛି, ତାହାର ବନ୍ଧଟି ଭାଙ୍ଗି ଯାଇଛି । ରାତିରେ ତ ଭାରି ବର୍ଷା ହୋଇଛି । ବିଲଟି ତ ବଣ୍ଣଖୋଲା ହୋଇ ଯାଇଛି । ଏତେବେଳେ ବିଲରୁ ପାଣିଗୁଡ଼ାକ ଗଡ଼ିଯାଇ ବିଲ ଶୁଖିଗଲେ ଧାନ ଖରାପ ହୋଇଯିବ । ତୁ କୋଡ଼ି ନେଇ ଯା, ସେ ବିଲର ବନ୍ଧଟି ବନ୍ଧାଇ ଦେବୁ ।"

କାମ କରିବାକୁ ପାଇଲେ ଆରୁଣିକୁ ଖୁବ୍ ଖୁସି ଲାଗେ । ସେ ଭାରି ଆନନ୍ଦରେ କୋଡ଼ି ଖଣ୍ଡେ ଧରି ଲମ୍ବେ ଲମ୍ବେ ବିଲ ଆଡ଼କୁ ଚାଲିଗଲା ।

ବିଲ ସେଠାରୁ ଦୁଇ ପା ବାଟ । ବିଲରେ ଯାଇ ଦେଖିଲା, ବନ୍ଧଟି ଦୁଇ ତିନି ହାତ ସରିକି ମେଲା ହୋଇ ଯାଇଛି । ଭାରି ଜୋରରେ ବିଲରୁ ପାଣି ବହି ଚାଲି ଯାଉଛି । କୋଡ଼ି ଧରି ଆରୁଣି ମହାଣ ବନ୍ଧାଇବାରେ ଲାଗିଗଲା ।

ଆରୁଣି କୋଡ଼ରେ ଆଣି ମୁହାଣରେ ଥରେ ମାଟି ଥୋଇ ଆଉ ଥରେ ମାଟି ଆଣିଲା ବେଳକୁ ଆଗଥର ମାଟିଯାକ ସବୁ ପାଣିରେ ଭାସି ଯାଇଥାଏ । ଆରୁଣି ଥରକୁ ଥର ମାଟି ଥୋଉଥାଏ । ସେ ମାଟି ଥରକୁ ଥର ଭାସି ଯାଉଥାଏ । ପାଣି ସୁଅରେ ମୁହାଣ ବନ୍ଧାଇ ହେଲା ନାହିଁ । ବହୁତ କଷ୍ଟରେ ପହରରେ ଖଣ୍ଡେ କାମ କରି ଆରୁଣି ଯାହା ବନ୍ଧାଇଲା, ସେଥିରେ ମଧ୍ୟ ପାଣି ରୋକ ହେଲା ନାହିଁ ।

ବଡ଼ ମଣିଷ ହୋଇଥିଲେ ଅବା କୋଡ଼ରେ ଭୁଟ୍ ଭୁଟ୍ କରି ବହୁତ ବହୁତ ମାଟି ଥୋଇ ଦେଇଥିଲେ ମୁହାଣଟି ପଡ଼ି ଯାଇଥାନ୍ତା । କିନ୍ତୁ ଆରୁଣି ଦେଖିଲା, ଦିନଯାକ ଲାଗିଲେ ମଧ୍ୟ ସେ ମୁହାଣଟି ପକାଇ ପାରିବ ନାହିଁ ।

କେତେବେଳ ଉତ୍ତାରୁ ଆରୁଣିକୁ ଗୋଟାଏ ବୁଦ୍ଧି ଦିଶାଗଲା । ସେ ଦେଖିଲା, ନିଜେ ମୁହାଣଟିରେ ହୁଡ଼ପରି ଶୋଇ ପଡ଼ିଲେ, ପାଣିଟା ଆଗ ବଳରେ ରୋକ ହୋଇ ରହିଯିବ । ତା' ଉତ୍ତାରୁ ଗୁରୁ ଆସିଲେ ଆଉ କାହାକୁ ଧରି ବନ୍ଧଟି ପକାଇଦେବା ସହଜ ହେବ ।

ଆରୁଣି ହୁଡ଼ପରି ମୁହାଣରେ ଶୋଇ ପଡ଼ିଲା । ପାଣି ରୋକ ହୋଇଗଲା ସତ, କିନ୍ତୁ ବେଳ ଗଡ଼ିଗଲା । ଗୁରୁ ଆସିଲେ ନାହିଁ କି ଆଉ କେହି ଆସିଲେ ନାହିଁ ।

ଏଣେ ସନ୍ଧ୍ୟା ବେଳକୁ ଗୁରୁ ଆଉ ଆଉ ଶିଷ୍ୟମାନଙ୍କୁ ପଚାରିଲେ, "କିରେ ଆରୁଣି କାହିଁ ?"

ଶିଷ୍ୟମାନେ କହିଲେ, "ଆପଣେ, ସେ ସକାଳୁ ବିଲ ବନ୍ଧାଇବାକୁ ଯାଇଛି, ତେଣୁ ତ ଫେରି ନାହିଁ ।"

ଗୁରୁ ସେଠାରୁ ବିଲ ଆଡ଼କୁ ଯାଇ ହୁଡ଼ରୁ ପାଟିକରି 'ଆରୁଣି, ଆରୁଣି' ବୋଲି ଡାକିଲେ । ଆରୁଣି 'ଓ' କଲା । ଗୁରୁ ଶୁଣିଲେ ଆରୁଣି 'ଓ' କରୁଛି, କିନ୍ତୁ ତାର ଦେଖା ନାହିଁ ।

ଗୁରୁ ପଚାରିଲେ, "ବାପା, କଣ କରୁଛୁ କି ?"

ଆରୁଣି କହିଲା, "ମୁଁ ଏଠାରେ ଶୋଇ କରି ପାଣି ରୋକିଛି । ମୁଁ ଉଠିଗଲେ, ବିଲରୁ ପାଣି ବାହାରିଯିବ । ଆପଣ ଆଉ କାହାକୁ ଡାକି ଦିଅନ୍ତୁ, ସେ ମୋ ପିଠିଆଡ଼େ ଭଲ କରି ବନ୍ଧ ବନ୍ଧାଇ ଦେଲେ, ମୁଁ ଉଠିବି ।"

ସେଠାରୁ ଗୁରୁ ଆରୁଣିକୁ ଧରି ଉଠାଇଲେ । ଆଶୀର୍ବାଦ କରି କହିଲେ, "ବାପା ଆରୁଣି, ତେର ପାଠ ହୋଇଗଲା । ମୁଁ ଆଶୀର୍ବାଦ କରୁଛି, ତୁ ପଣ୍ଡିତ ହୁଅ । ତୋର ମଙ୍ଗଳ ହେଉ ।"

ପ୍ରଶ୍ନ—୧ । ବିଲ, କଣ୍ଟଖେଳା, ଶୁହାଣ, ତୋଡ଼, ବେକ ହେଲା ନାହିଁ, ମୁହାଣ ପକେଇବା, ଭୁଙ୍ଗ୍ ଭୁଙ୍ଗ ହର—ଏହାର ଅର୍ଥ କଣ ?

୨ । ଆରୁଣିର କି ଗୁଣ ଦେଖି ଗୁରୁ ଖୁସି ହେଲେ ?

---

## କାଂଚି ଯୁଦ୍ଧ

ସେ ଆଜକୁ ଚାରିଶ ବର୍ଷରୁ ବେଶି କାଳର କଥା; ସେତେବେଳେ ଏଇ ଓଡ଼ିଶା ଗୋଟିଏ ବଡ଼ ସାମ୍ରାଜ୍ୟ ଥିଲା । ରାଜଧାନୀ ଥିଲା କଟକ ରାଜା ଥିଲେ ପୁରୁଷୋତ୍ତମ ଦେବ ।

ଓଡ଼ିଶା ସାମ୍ରାଜ୍ୟର ଦକ୍ଷିଣକୁ ଲାଗିଥିଲା କାଂଚି ରାଜ୍ୟ । ଏବର ମାନ୍ଦ୍ରାଜଠାରୁ ଆହୁରି ଦକ୍ଷିଣକୁ ଏଇ କାଂଚି ରାଜ୍ୟ ଥିଲା । ଏହି ରାଜ୍ୟର ରାଜଧାନୀ କାଂଚି ନଗର ଥିଲା କାବେରୀ ନଦୀ କୂଳରେ ।

କାଂଚି ରାଜାଙ୍କର ପଦ୍ମାବତୀ ବୋଲି ଗୋଟିଏ ସୁନ୍ଦରୀ ଜେମା ଥିଲେ । ଓଡ଼ିଶା ରାଜା ପୁରୁଷୋତ୍ତମ ଦେବଙ୍କ ସଙ୍ଗେ ସେହି ଜେମାଙ୍କର ବାହାଘର ଠିକ ହୋଇଥିଲା । ଏହି ବାହାଘର ଠିକ୍ କରିବା ପାଇଁ କାଂଚି ରାଜାଙ୍କ ମନ୍ତ୍ରୀ ଓଡ଼ିଶାକୁ ଆସିଥିଲେ । ସେହି କାଂଚି ମନ୍ତ୍ରୀ ଜଗନ୍ନାଥଙ୍କ ରଥ ଯାତ୍ରା ଦେଖିବାକୁ ପୁରୀ ଆସିଲେ । ପୁରୁଷୋତ୍ତମ ଦେବ ମଧ୍ୟ ଜଗନ୍ନାଥଙ୍କ ରଥ ସେବା କରିବାପାଇଁ ସେତେବେଳକୁ ପୁରୀରେ ଥିଲେ । ରାଜାଙ୍କର ରଥରେ କାମ ହେଉଛି ରଥ ଓଳାଇବା । କାଂଚି ମନ୍ତ୍ରୀ ଦେଖିଲେ ପୁରୁଷୋତ୍ତମ ରଥ ଓଳାଇବା କାମ କରୁଛନ୍ତି । ତାଙ୍କ ମନ ଖରାପ ହୋଇଗଲା । ସେ ବିଚାରିଲେ ଓଳାଇବା କାମ ମେହେନ୍ତରଙ୍କର । ଏଇ ମେହେନ୍ତର କାମ କରୁଥିବା ରଜାଙ୍କୁ କାଂଚି ରାଜାଙ୍କର ଜେମା ଦେବା ଠିକ୍ ହେବ ନାହିଁ । ମନ୍ତ୍ରୀ ଦେଶକୁ ଯାଇ ରାଜାଙ୍କୁ ସେଇକଥା ଜଣାଇଲେ । ରାଜା ଠିକ୍ କଲେ, ପୁରୁଷୋତ୍ତମ ଦେବଙ୍କ ପରି ଗୋଟାଏ ମେହେନ୍ତରକୁ ସେ ଝିଅ ଦେବେ ନାହିଁ ।

ପୁରୁଷୋତ୍ତମ ସେତେବେଳେ ମହା ପ୍ରତାପୀ ସମ୍ରାଟ୍ । ସେ ଏକଥା ଶୁଣି ସହିବେ କାହିଁ ? ସେ କହିଲେ, "ହଁ, କାଂଚି ରାଜାଙ୍କର ଏଡ଼େ ଦମାକ୍ ! ତେବେ ମୁଁ କାଂଚି ଜିଣି ପଦ୍ମାବତୀକୁ ଆଣି ମେହେନ୍ତରକୁ ବାଣ୍ଟି କରାଇଦେବି ।"

ଓଡ଼ିଶା ଓ କାଂଚି ଦୁଇ ରାଜ୍ୟ ଭିତରେ ଏଥିପାଇଁ ଯୁଦ୍ଧ ଲାଗିଲା । ଦୁଇ ପକ୍ଷ ଭାରି ଦମ୍ଭରେ ଯୁଦ୍ଧ କଲେ । ପୁରୁଷୋତ୍ତମଙ୍କ ପରି ବଡ଼ ସମ୍ରାଟଙ୍କ ପାଖେ କାଂଚି ପରି ଛୋଟ ରାଜ୍ୟର ବଳ ବା କେତେ

ଶେଷକୁ କାଂଚି ରାଜା ପରାସ୍ତ ହେଲେ । ପୁରୁଷୋତ୍ତମ ଦେବ ପଦ୍ମାବତୀଙ୍କୁ ଧରି କଟକ ଫେରି ଆସିଲେ ।

ପଦ୍ମାବତୀଙ୍କ ସଙ୍ଗେ ପୁରୁଷୋତ୍ତମ କାଂଚିର ଗଣେଶ ଓ ସତ୍ୟବାଦୀ ବା ସାକ୍ଷିଗୋପାଳ ଏହି ଦୁଇଟି ଦେବ ମୂର୍ତ୍ତି ନେଇ ଆସିଥିଲେ । କାଂଚି ଗଣେଶ ଏବେ ପୁରୀ ମନ୍ଦିରରେ ଅଛନ୍ତି । ସାକ୍ଷିଗୋପାଳଙ୍କ କଥା ସମସ୍ତେ ଜାଣନ୍ତି ।

ପୁରୁଷୋତ୍ତମ ପଦ୍ମାବତୀଙ୍କୁ ନିଜର ମନ୍ତ୍ରୀଙ୍କ ହାତରେ ସମର୍ପି ଦେଇ କହିଲେ, "ଏହି ରାଜକନ୍ୟାଙ୍କୁ ଗୋଟିଏ ମେହେନ୍ତର ସଙ୍ଗେ ବିବାହ କରାଇଦିଅ ।" ମନ୍ତ୍ରୀ 'ହଜ' ବୋଲି କହି ପଦ୍ମାବତୀଙ୍କୁ ନେଇ ଘରକୁ ଗଲେ । ମନ୍ତ୍ରୀଙ୍କ ଭାର୍ଯ୍ୟା, ଝିଅ, ବୋହୂ ସମସ୍ତେ ପଦ୍ମାବତୀଙ୍କୁ ଦେଖି ତାଙ୍କର ଏ ଦଶା ଭାଳି କାନ୍ଦିଲେ ଓ ପଦ୍ମାବତୀଙ୍କୁ ଭାରି ଆଦରରେ ରଖିଲେ ।

ମନ୍ତ୍ରୀ କାହାକୁ କିଛି କହୁନଥାନ୍ତି । ରାଜା ପଚାରିଲେ କହନ୍ତି, "ମୁଁ ପଦ୍ମାବତୀଙ୍କୁ ବିବାହ ଦେବାପାଇଁ ଗୋଟିଏ ମେହେନ୍ତର ଖୋଜୁଛି ।"

ସେ ବର୍ଷ ପୁଣି ରଥ ଯାତ୍ରା ଆସି ହୋଇଗଲା । ରାଜା ପୁରୁଷୋତ୍ତମ ପୁରୀକୁ ବିଜେ କଲେ । ମନ୍ତ୍ରୀ ମଧ୍ୟ ପିଲାକୁଟୁମ୍ବଙ୍କୁ ନେଇ ପୁରୀ ଆସିଲେ । ରଥ ଟଣାଇବା କାମଟି କରିବାକୁ ରାଜା ବାହାରିଲେ ।

ମନ୍ତ୍ରୀ ମଧ୍ୟ ପିଲା କୁଟୁମ୍ବ ନେଇ ରଥ ଟଣାଇବା ବା 'ଛେରା ପହଁରା' ଦେଖିବାକୁ ଗଲେ ।

ରାଜା ଝାଡ଼ୁମୁଠା ଧରି ଛେରାପହଁରା କରୁଛନ୍ତି, ଠିକ୍ ଏତିକି-ବେଳେ ମନ୍ତ୍ରୀ ପଦ୍ମାବତୀଙ୍କୁ ଆଣି ପୁରୁଷୋତ୍ତମଙ୍କ ହାତରେ ସମର୍ପି ଦେଇ କହିଲେ, "ମହାରାଜ ବର୍ତ୍ତମାନ ମେହେନ୍ତର । ଏହି ମେହେନ୍ତରଙ୍କ ହାତରେ ମୁଁ ପଦ୍ମାବତୀଙ୍କ ଦେଉଅଛି । ମେହେନ୍ତର ମହାରାଜା ଏହାଙ୍କୁ ଗ୍ରହଣ କରନ୍ତୁ ।"



ରାଜା ମନ୍ତ୍ରୀଙ୍କ ବୁଦ୍ଧିରେ ଅନ୍ତର୍ଦ୍ଧି ହୋଇଗଲେ ସେହି ଦିନଠାରୁ ପଦ୍ମାବତୀ ଓଡ଼ିଶାର ରାଣୀ ହେଲେ ।

ପ୍ରଶ୍ନ—୧ । ପୁରୁଷୋତ୍ତମ ଦେବ କାହାଁକୁ କାଂଚି ଜିଣିଲେ ?

୨ । ସେ କାହାଁକୁ ମେହେନ୍ତର ସାଙ୍ଗେ ପଦ୍ମାବତୀଙ୍କ ବାହା କରାଇବାକୁ ଆଦେଶ ଦେଲେ ?

# ଜହ୍ନମାମୁ

ଆ ଆ ମୋ ଜହ୍ନମାମୁ
ଦେଖିବୁ ହୁନ୍ଦର,
ଥାଳପଟ୍ଟ ସର ପୁନିଅଁ ଦିନ
ଦିଶୁ କି ସୁନ୍ଦର !

ଦିନ ଯାକ ପଡ଼ଇ ଡାକ
ନାହିଁ ଦେଖା ଚୋର
ସଞ୍ଜେ ହୁଇଁ ସକାଳେ ବୁଡ଼
ରାତି ହେଲେ ଭୋର ।

ଧାରେ ଛୁଟେ ପବନ ସାଙ୍ଗେ
ଘଡ଼ଏ ଅନ୍ଧାର
ଘଡ଼ିକ ପରେ ସିନ୍ଦୁର ଫାଟି
ହୁଅଇ ସକାଳ ।

ଘଡ଼ିକେ ଘଡ଼ି ରହେ ଅନ୍ଧାର
ଛୁଟୁଥାଉ ତୁ ଧାରକୁ ଧାର
କଅଁସ ରାତି ନାହିଁ ଦେଖା
ଗଲୁ ଯାକ ଚୋର ।

ପୁଣି [illegible] ସ୍ବଚ୍ଛା ଦେଖ
ଘଡ଼ଏ ଥିଲୁ ଦେଖା ନ ଥିଲୁ
ଛୁଟିଆ ଦିନ ଘଡ଼ି ଦେଖା
ବଢ଼ ଧାରକୁ ଧାର ।

ବଢି ବଢି ପୁଣି — ପୁନଅଁ ହେଲା
ରୁପାଥାଳି ପରି — ଦିଶ ଦିଶିଲା
ଦିଶିଲୁ ସୁନ୍ଦର ।
ପୁନଅଁ ଯାଇ — ପୁନଅଁ ହେଲା
ଛଅଣ ଦିନେ — ମାସ ପୂରିଲା
ପକ୍ଷେ ବଢି ତୁ — ପକ୍ଷେ ଛିଡ଼
ଜହ୍ନମାମୁ ମୋର,
ଆ ଆ ମୋ — ଜହ୍ନମାମୁ
ତଡ଼ି ଦେ ଅନ୍ଧାର
ଖେଳିବୁ ଆମେ — ଫିଲ୍ଲଏ ତୁଁ ରେ
ଦେଖିବୁ ସୁନ୍ଦର ।

ପ୍ର:—୧ । ଚନ୍ଦ୍ର ଯେଉଁ ପକ୍ଷରେ ବଢ଼େ ତାକୁ କି ପକ୍ଷ କହନ୍ତି ?
ଚନ୍ଦ୍ର ଯେଉଁ ପକ୍ଷରେ ଛଢ଼େ ତାକୁ କି ପକ୍ଷ କହନ୍ତି ?
୨ । ସୁନ୍ଦର, ଉଅଁସ, ପୁନଅଁ, ପକ୍ଷ, ଜୁଡିଅ: ଏହାର ଅର୍ଥ କଅଣ ?

---

## ଲୁଗା, ପାଟ, ଶାଲ

### ୧ । ଲୁଗା

ବାପା—ଗୋପି, ତୁ ତ ନିତି ଲୁଗା ପିନ୍ଧୁ, ଜାଣିଛୁ ଲୁଗା କାହିଁରୁ କେମିତି ହୁଏ ?

ଗୋପୀ—ସେ କଥା ତ ମୁଁ ଜାଣେ ନାହିଁ । ମୋତେ କହ ବାଅ ।

ବାପା—କପା ଗଛ ଦେଖିଛୁ ?

ଗୋପୀ —ହଁ ଦେଖିଛୁ । ବାଡ଼ିରେ କପାଗଛ ସବୁ ହୋଇଥାଏ ।
ସେଥିରେ ହଳଦିଆ ହଳଦିଆ ଫୁଲ ଫୁଟେ । ଫୁଲ ଝଡ଼ି
ପଡ଼ିଲେ ବକଡ଼ା ହୁଏ । ବକଡ଼ା ବଢ଼ି ବଢ଼ି ଫାଟିଯାଏ ।
ସେଥିରୁ କପାଫୁଟ ବାହାରି ପଡ଼େ ।

ବାପା —ହଁ, ସେଇ ତୁଳାରେ ଲୁଗା ହୁଏ । ତୁ ତ ଖାଲି ବାଡ଼ିରେ
କପା ଦେଖିଛୁ । ସେ ଛ ବଡ଼ କପା । ଲୋକେ ବିଲରେ
କପା କରନ୍ତି । ସେ କପା ବର୍ଷକୁ ବର୍ଷ ଅମଦାନୀ ହୁଏ ।
ବରଷକେ ଗଛ ମରିଯାଏ, ପୁଣି ଆର ବର୍ଷକୁ ହୁଏ ।

ଗୋପୀ—କପାରୁ ଲୁଗା କିପରି ହୁଏ ?

ବାପା—କପାରୁ ମଞ୍ଜି କାଢ଼ି ସଫା କରି ଅରଟରେ ସୂତା କାଟନ୍ତି ।
ତନ୍ତୀମାନେ ସେହି ସୂତାରେ ଲୁଗା ବୁଣନ୍ତି । ଏପରି ଲୁଗା,
ଗୁଦର, ଥାନ ସବୁ କପା ତୁଳାରେ ହୁଏ । ଥାନ ଲୁଗା କାଟି
ସିଲାଇ କରି ଦରଜୀ କୁରୁତା ତିଆରି କରେ ।

## ୨ । ପାଟ

ଗୋପୀ—ପାଟ ମଠା କଅଣ ସବୁ ତୁଳାରେ ହୁଏ ? ସେ ସବୁ ତ
କେଡ଼େ ସୁନ୍ଦର ଚକ୍‌ଚକ୍ ଦିଶେ ।

ବାପା—ନା, ସେସବୁ ତୁଳାରେ ହୁଏ ନାହିଁ । ଏବେ କହିବରେ
ଏଣ୍ଡିପୋକ ପୁଷ ହେଉଛି । ପାଟ ମଠା ସବୁ ଏଇସବୁ
ପୋକମାନେ ତିଆରି କରନ୍ତି ।

ଗୋପୀ—ପୋକ କଣ ତୁଳା ପୁଷ କରନ୍ତି, ନା ସୂତା କାଟନ୍ତି ?

ବାପା—ପୋକ ପୁଷ କରନ୍ତି ନାହିଁ । ପୋକଙ୍କୁ ଲୋକେ ପୁଷ
କରନ୍ତି । ବରଷା ଦିନରେ ସଜନା ଗଛରେ ସବାଳୁଆ
ପୋକ ହୁଏ ଦେଖିଛୁ ?

ଗୋପୀ—ହଁ ଦେଖିଛି । ତା' ଦେହରେ ଲମ୍ବା ଲମ୍ବା ଲୁମ ଥାଏ । ସେ ପୋକ ଆମ ଦେହରେ ଲାଗିଲେ ଦେହ କୁଣ୍ଡାଇ ହୋଇ ଫୁଲିଯାଏ ।

ବାପା—ସବୁ ସଂବାଳୁଆରେ ବାଳ ନ ଥାଏ । ବାଇଗଣ ଭିତରେ ଯେଉଁ ପୋକ ଥାଏ, ସେଥିରେ ତ ବାଳ ନ ଥାଏ । ସେ ବି ଏକ ପ୍ରକାର ସଂବାଳୁଆ ପୋକ । ବାଇଗଣ ବଉଳରେ, ବାଇଗଣ ପତ୍ର ଦେହରେ ସେଇପରି କେଳା କେଳା ବଡ଼ ବଡ଼ ସଂବାଳୁଆ ପୋକ ଥାଏ, ସେଥିରେ ବାଳ ନ ଥାଏ ।

ଗୋପୀ—ବାଳ ନ ଥିଲେ ସୂତା କେମିତି ହୁଏ ?

ବାପା—ସଂବାଳୁଆ ବାଳରୁ ସୂତା ହୁଏ ନାହିଁ । ଯେଉଁ ସଂବାଳୁଆରୁ ପାଟ, ଏଣ୍ଡି, ମଠା ହୁଏ ସେ ପୋକ ଦେହରେ ବାଳ ନ ଥାଏ । ସେ ପୋକ ପତ୍ର ଖାଇ ଖାଇ ବଢ଼େ । ଗୁଟି କରିବା ଲୋକ ତାକୁ ଖୁଆଏ, ତାକୁ ବଢ଼ାଏ । ପୋକ ପୁରା ବଢ଼ିଗଲେ ତା' ମୁହଁରୁ ଗୋଟିଏ ନାଳ ବାହାରି ତା' ଦେହ ଚାରିପଟେ ଜୁଳାପରି ଗୋଟିଏ ଖୋଳ ହୋଇଯାଏ । ସେହି ଜୁଳାରୁ ପାଟ ହୁଏ ।

ଗୋପୀ—ସେଇ ଜୁଳାରୁ ସୂତା କାଟି ପାଟ ବୁଣନ୍ତି ?

ବାପା—ହଁ, କେତେ ପୋକ ମୁହଁରୁ ଜୁଳା କାଢ଼ନ୍ତି ନାହିଁ । ଗୋଟାଏ ସୂକ୍ଷ୍ମ ପରି ନାଳ ଚାରିପଟେ ଗୁଡ଼ାଇ ଗୁଡ଼ାଇ ଗୋଟାଏ ଡିବାପରି ଖୋଳ କରି ନିଜେ ତା ଭିତରେ ଲୁଚି ରହନ୍ତି । ମଠା ପୋକ ଏଇପରି ନାଳ ସୂତାରେ ଛୋଟିଆ ଘରଟିଏ କରେ । ଖୋଳ କାଟି ହୁଡ଼ିପିଟା ଯାଏ ଏ ପୋକକୁ ରଖନ୍ତି ନାହିଁ । ଖୋଳଟି ଭିତରେ ପୋକଟି ଥାଉ ଥାଉ ତାତିଲା ପାଣିରେ ପକାଇ ଖୋଳଟିକୁ ସିଝାଇ ଦିଅନ୍ତି ।

ସେଥିରେ ପୋକଟି ମରିଯାଏ । ସୂତା ସାକଲ ହୋଇଯାଏ । ତା' ଭିତରୁ ସୂତା ମୁହଁଟି ଧରି ସୂତାଟିକୁ ଲଟେଇରେ ଗୁଡ଼େଇ ଦିଅନ୍ତି । ସୂତାଟି ସରିଗଲେ ମଲା ପୋକଟି ପଡ଼ି ଯାଏ । ଏଇ ସୂତାରେ ମଠା, ପାଟ, ଏଣ୍ଡି ସବୁ ବୁଣନ୍ତି ।

## ୩ । ଶାଲ

**ଗୋପୀ**—ଶାଲ ତେବେ କାହିଁରେ ହୁଏ ?

**ବାପା**—ଶାଲ ବନାତ ସବୁ ମେଣ୍ଢା ଲୁମରେ ହୁଏ । ମେଣ୍ଢାଲୁମ ବଢ଼ିଗଲେ ତାକୁ କାଟି ସେଥିରେ ସୂତା କରି ଶାଲ, ବନାତ, କମ୍ବଳ ସବୁ ବୁଣନ୍ତି ।

**ଗୋପୀ**—ମେଣ୍ଢାଲୁମ ସାନ ସାନ, ମେଞ୍ଚା ମେଞ୍ଚା, ବଡ଼ ଠାଆଁସା ସେଥିରେ ସୂତା କିପରି ହୁଏ ?

**ବାପା**—ଆମ ଆଡ଼େ ଯେଉଁ ମେଣ୍ଢା ହୁଅନ୍ତି ତାଙ୍କ ଲୁମରେ ଭଲ ଶାଲ କମ୍ବଳ ବନାତ ହୁଏ ନାହିଁ । ଖାଲି ମୋଟା ଠାଆଁସା କମ୍ବଳ ହୁଏ ।

**ଗୋପୀ**—ତେବେ ଭଲ ଶାଲ ବନାତ ସବୁ କାହିଁରେ ହୁଏ ?

**ବାପା**—ଯେଉଁ ଦେଶରେ ଖୁବ ଶୀତ, ସେ ଦେଶରେ ଯେଉଁ ମେଣ୍ଢା ହୁଅନ୍ତି ତାଙ୍କ ଲୁମ ଶୀତଦିନେ ଖୁବ୍ ଲମ୍ବା ଲମ୍ବା ହୋଇ ବଢ଼ିଯାଏ ସେ ଲୁମ ବଡ଼ କଅଁଳିଆ । ଶୀତ ଶେଷକୁ କଟୁଆଳେ ସେ ଲୁମ କାଟି ପକାନ୍ତି । ସେଇ ଲୁମରେ ସୂତା କଲେ ସେଇ ସୂତାରୁ ଭଲ ଶାଲ, ବନାତ, ମଲିଦା, କାଶ୍ମିରି, ଭଲ କଅଁଳିଆ କମ୍ବଳ ହୁଏ ।

**ପ୍ରଶ୍ନ**—୧ । ଏଣ୍ଡି କିପରି କିପରି ହୁଏ ?

୨ । ମଠା, ପାଟ କିପରି ହୁଏ ?

୩ । ଗାଈ କଅଁର ହୁଏ ?
୪ । ଆମ ଦେଶର ମେଣ୍ଢାଙ୍କ ଦେହରେ କାହିଁକି ବେଶୀ ଲୁମ ହୁଏ ନାହିଁ ?

---

## କାଜି ଓ ସମ୍ରାଟ

ବହୁକାଳ ତଳେ ଗିଆସଉଦ୍ଦିନ ବୋଲି ଏ ଦେଶରେ ଜଣେ ସମ୍ରାଟ୍ ଅର୍ଥାତ ସମସ୍ତଙ୍କ ଉପରେ ବଡ଼ ରାଜା ଥିଲେ । ସେ ସବୁଦିନ ବଣରେ ବଗିଚାରେ ବୁଲି ଧନୁ ଶର ଧରି ଲକ୍ଷ ବିନ୍ଧନ୍ତି । ଦିନେ ଏପରି ଏଆଡ଼େ ସିଆଡ଼େ ଲକ୍ଷ ବିନ୍ଧୁ ବିନ୍ଧୁ ଶରଟି ଯାଇ ଗୋଟିଏ ପିଲା ଦେହରେ ବାଜିଲା ।

ସେ ପିଲାଟି ଗୋଟିଏ ବୁଢ଼ୀର ପୁଅ । ବୁଢ଼ୀଟି ଗରିବ । ତାର ଏ ଗୋଟିକ ବୋଲି ପୁଅ—ଆଉ କେହି ନାହିଁ । ବୁଢ଼ୀଟି ବିଧବା —ଦୁଃଖ କରି ପୁଅଟିକୁ ପୋଷେ ।

ପୁଅଟି ଦେହରେ ଶର ବାଜି ପୁଅଟିର ହାତ ଖଣ୍ଡିଆ ହୋଇ ଗଲା । ବୁଢ଼ୀ ବିଚାରୀ କରେ କଣ । ପୁଅଟିକୁ ଧରି କେତେବେଳ-ଯାଏ କାନ୍ଦିଲା ତା' ଉତ୍ତାରୁ ପୁଅକୁ କାଖେଇ ଧରି ଗୋଟିଏ ହକିମ୍ ବା ବୈଦ୍ୟ ଦୁଆରକୁ ନେଇଗଲା ।

ବୈଦ୍ୟ ହାତଟି ସଫା କରି ମଲମ ଦେଇ ପଟି ପକାଇ ଦେଲା । ବୁଢ଼ୀ ଟିକିଏ ଥଣ୍ଡା ହେଲା ।

ବୁଢ଼ୀ ବିଚାରିଲା—ସମ୍ରାଟ୍ ହେଲେ କଅଣ ହେଲା । ମୋ ପୁଅକୁ ସେ ଶର ମାରିଛନ୍ତି ମୁଁ ଯାଉଛି କାଜିଙ୍କ ପାଖେ ମକଦମା କରିବି । କାଜି ତ ସବୁ ମକଦମା ବୁଝନ୍ତି , ଏ ମକଦମା କଣ ବୁଝିବେ ନାହିଁ ?

ବୁଢ଼ୀ ପୁଅଟିକୁ ଘେନି କାଜିଙ୍କ ପାଖକୁ ଗଲା । କାଜିଙ୍କ ପାଖେ ଦରଖାସ୍ତ ଦେଇ ସବୁ କଥା କହିଲା ।

କାଜି ବଡ଼ ହଇରାଣରେ ପଡ଼ିଗଲେ । ସେ ଏବେ କରନ୍ତି କଅଣ । ରାଜ୍ୟର ସମ୍ରାଟ୍ ଦୋଷ କରିଛନ୍ତି । ଏ ମକଦ୍ଦମା ବିଚାର କଲେ ସମ୍ରାଟ୍ ତ ନିଜେ ଦୋଷୀ ହେବେ । ସମ୍ରାଟଙ୍କୁ ଦୋଷୀ କଲେ ସମ୍ରାଟ୍ ରାଗିଯାଇ କାଜିଙ୍କ ମୁଣ୍ଡ କାଟି କରି ପାରନ୍ତି ।

କାଜି ଏ ସବୁ କଥା ବିଚାରିଲେ । ପୁଣି ବିଚାରିଲେ—ନ୍ୟାୟ ବିଚାର କରିବା ମୋର କାମ । ଯେ ଦୋଷ କଲା, ତାଙ୍କୁ ଦଣ୍ଡ ଦେବାପାଇଁ ସମ୍ରାଟ୍ ମୋତେ ରଖିଛନ୍ତି । ମୋ କାମ ମୁଁ କରିବି । ଯେଣିକି ଯାହା ହେଉ । ମୁଁ ଅଧର୍ମ କରିପାରିବି ନାହିଁ ।

କାଜି ସମ୍ରାଟଙ୍କୁ ସମନ କରି ଡକାଇଲେ । ସମ୍ରାଟ୍ ଆସି ହାଜର ହେଲେ । କାଜି ପଚାରିଲେ :—

"ଗିୟାସଉଦ୍ଦିନ, ଆପଣ ଏ ବିଧବାର ପୁଅକୁ ଶର ମାରି ଏପରି ଖଣ୍ଡିଆ କରିଛନ୍ତି ?"

ସମ୍ରାଟ୍ କହିଲେ—"ହଜୁର, ମୁଁ ଶର ମାରି ଖେଳୁଥିଲାବେଳେ ଭୁଲରେ ମୋ ଶରଟି ଏ ବିଧବାଙ୍କ ପୁଅ ଦେହରେ ବାଜିଛି ।"

କାଜି କହିଲେ, "ଆପଣ ଏ ବିଧବାଙ୍କୁ ସନ୍ତୋଷ କରନ୍ତୁ । ତା' ନ ହେଲେ ମୁଁ ଆପଣଙ୍କୁ ଦୋଷର ଦଣ୍ଡ ଦେବି ।"

ସମ୍ରାଟ୍ ସେଠାରୁ ବିଧବାଙ୍କୁ ବହୁତ ଟଙ୍କା ସୁନା ଦେଇ ଖୁସି କରିଦେଲେ । ବିଧବା କାଜିଙ୍କ ଠାରୁ ଦରଖାସ୍ତ ଉଠାଇ ନେଇ କହିଲେ, "ମୋର ଆଉ ମକଦ୍ଦମା କରିବାର ଦରକାର ନାହିଁ ।"

କାଜି ସେଠାରୁ ବିଧବାଙ୍କ ବିଦା କରି ଦେଇ ସାରି ନିଜ ଆସନରୁ ଓହ୍ଲାଇ ଆସି ସମ୍ରାଟଙ୍କୁ ବିଧିମତେ ସଲାମ କରି କହିଲେ,



"ସମ୍ରାଟ୍, ଆପଣ ମୋର ଦୋଷ ଧରିବେ ନାହିଁ । ବିଚାର କରିବା କାମ ମୋତେ ଦିଆଯାଇଛି । ମୁଁ ସେହି କାମ କରୁଥିଲି ।"

ସମ୍ରାଟ୍ ଅତି ଆନନ୍ଦରେ କାଜିଙ୍କୁ କୁଣ୍ଢାଇ ପକାଇ କହିଲେ—"ଆପଣଙ୍କ ଭଳି କାଜି ମୋ ସାମ୍ରାଜ୍ୟରେ ଅଛନ୍ତି, ଏତିକିରେ ମୋର ଆନନ୍ଦ ।"

ପ୍ରଶ୍ନ—୧ । କାଜି କିପରି ଅସୁବିଧାରେ ପଡ଼ିଥିଲେ ?

୨ । କାହାଙ୍କ ଘରରେ ସମ୍ରାଟ କାହିଁକି ସନ୍ତୁଷ୍ଟ ହେଲେ ?
୩ । ସମ୍ରାଟ୍‌ଙ୍କ ଉତ୍ସାହରେ ବଧବାକୁ ସନ୍ତୁଷ୍ଟ କଲେ

---

# ଗୁଡ଼, ନବାତ ଓ ଚିନି

ଆଖୁ କ୍ଷେତ ଅନେକେ ଦେଖିଥିବେ । ଖଣ୍ଡ ଖଣ୍ଡ ଆଖୁ କିଏ ଚୋବାଇ ଖାଆନ୍ତି; ଭାରି ମିଠା ଲାଗେ । ସେହି ଆଖୁରୁ ଗୁଡ଼ ହୁଏ । ଗୁଡ଼ରୁ ଚିନି ହୁଏ ।

ଆଖୁରୁ ଆଗ କିପରି ଗୁଡ଼ ହୁଏ ? ଆଖୁକୁ ଖଣ୍ଡ ଖଣ୍ଡ କରି କାଟି ଦିଅନ୍ତି । ସେହି ଆଖୁ ଖଣ୍ଡଗୁଡ଼ିକ ଘଣାରେ ପେଲି ତା' ରସ ବା ପେରୁଅ କାଢ଼ନ୍ତି ।

ସେ ଘଣାଟି କିପରି ? ଦୁଇ ଅଙ୍ଗ ଯୋଡ଼ିଏ କାଠ ବା ଲୁହା ଗୋଲ ଗୋଲ ହୋଇ ଖମ୍ବ ପରି ପାଖକୁ ପାଖ ଲାଗି କରି ବୁଲୁଥାଏ । ଖଣ୍ଡିଏ ଆଖୁ ଭର୍ତ୍ତି କରି ଦେଲେ, ଆଖୁଟି ଛଟି ହୋଇ ପେରୁଅ ତଳକୁ ନିଗିଡ଼ି ପଡ଼େ ସିଠା ବା ଛେଦା ଆରପଟକୁ ବାହାରିଯାଏ ।

ଆଖୁ ଶାଳରେ ଗୋଟିଏ ବଡ଼ ଚୁଲି ହୋଇ ତା' ଉପରେ ଗୋଟାଏ କଡ଼େଇ ବସିଥାଏ । ସେଇ କଡ଼େଇରେ ଆଖୁ ରସ ଅଟାଇ ଦିଅନ୍ତି । ତଳେ ଛେଦା ଜାଳନ୍ତି ।

ଏହିପରି ଜାଳୁ ଜାଳୁ ଆଖୁ ରସ ବଦଳି ହୋଇ ମହୁପରି ଅଠା ଅଠା ହୋଇ ଆସେ । ତାକୁ ଓହ୍ଲାଇ ଥଣ୍ଡା କରି ମାଠିଆରେ ରଖିଦେଲେ ଗୁଡ଼ ହୁଏ ।

କେତେବେଳେ ଏହି ରନ୍ଧା ରସକୁ ଚୁଲିରୁ ଓହ୍ଲାଇବାକୁ ହେବ, ତାହା ଜାଣିବା ସହଜ ନୁହେଁ । ଯେଉଁମାନେ ଗୁଡ଼ କରି

ଶିଖିଛନ୍ତି, ସେଇମାନେ ତାହା ଜାଣନ୍ତି । ଭଲ ଆଖୁରୁ ଏହି ଗୁଡ଼ ଭଲକରି କରି ଜାଣିଲେ କେତେଦିନ ପରେ ଗୁଡ଼ରେ ପଗଡ଼ ଧରି ଯାଏ । ଭଲ ପଗଡ଼ ଗୁଡ଼ରୁ ଆଗେ ଗୁଡ଼ିଆମାନେ ନବାତ କରୁଥିଲେ ।

ନବାତ କିପରି କରୁଥିଲେ ଜାଣ ? ଗୋଟିଏ ସଫା ଗାମୁଛାରେ ପଗଡ଼ ଗୁଡ଼ ରଖି ସଫା କରି ଦଳି ଧୋଇ ଦଅନ୍ତି । ଧୁଆ ପଗଡ଼ି ଗୁଡ଼କ ସୁନା ପରି ଖଣ୍ଡ ଖଣ୍ଡ ହୋଇ ଚକ୍ ଚକ୍ ଦିଶେ ।

ସେଠାରୁ ତାକୁ ଗୋଟିଏ କରେଇରେ ପାଣି ଦେଇ ସିଝାନ୍ତି । ସେଇ କରେଇରେ ଟିକିଏ ଦୁଧ ପକାଇ ଦଅନ୍ତି । ଦୁଧ ଗୁଡ଼ର ମଇଳା ସଫା କରିଦିଏ ।

ଥରକୁ ଥର ଫେଣ ପରି ମଇଳା ଉଠୁଥାଏ ? ଗୁଡ଼ିଆ ତାକୁ ଚଟୁରେ ଛାଣି କାଢ଼ି ଦେଉଥାଏ । ମଇଳା କାଢ଼ା ସରିଲେ ନବାତ ପାଗ ଠିକ ହେଲା ବୋଲି ଜଣାପଡ଼େ ।

ସେଠାରୁ ସେଇ ତାତଲା ଗୁଡ଼ ପାଣିକୁ କରେଇରୁ ହାଣ୍ଡିରେ ଭର୍ତ୍ତି କରି ତା' ଉପରେ ଚଙ୍ଗୁଡ଼ିଆ ଦଳ ଘୋଡ଼ାଇ ଥଣ୍ଡା କରି ଦଅନ୍ତି । ସଙ୍ଗେ ସଙ୍ଗେ ଗୋଟିଏ ଗୋଟିଏ ପଲମ ଉପରେ ଆଠିକାଠିମାନ ଅଣେଇ କରି ରଖି ଦଅନ୍ତି ।

ଦିନେ ଦୁଇଦିନ ଧରି ସେଇ ଅଠିକାରୁ ଶିରି ଲାଗିଡ଼େ । ଏଇ ନବାତ ଶିରି ଦେଖିବାକୁ ମହୁ ପରି । ଲୋକେ ଏଥିରେ ଚକୁଳି ବୁଡ଼ାଇ ଖାଆନ୍ତି । ଶିରି ଲାଗିଡ଼ି ଗଲେ ହାଣ୍ଡିଟି ଭାଙ୍ଗି ନବାତଟି ବାହାର କରନ୍ତି ।

ଏବେ ଚିନି ମିଳିଲାଣି । ଆଉ ନବାତ ସେତେ କରୁ ନାହାନ୍ତି । ଏବେ ବଜାରରେ ଯେଉଁ ନବାତ ମିଳେ ସେ ସବୁ ଚିନିରେ ହୁଏ ।

ଚିନିକୁ ପାଣିରେ ସିଝା ହାଣ୍ଡିରେ ଭର୍ତ୍ତି କରି ଥଣ୍ଡା କରି ଦଅନ୍ତି । ଟିକିଏ ରଙ୍ଗ ଦେବା ପାଇଁ ସାମାନ୍ୟ ଗୁଡ଼ ମଧ ପକାଇ ଦଅନ୍ତି । ଏ ନବାତ ଖାଇବା ଠାରୁ ଚିନି ଖାଇବା ଭଲ ।

ଚିନି କିପରି ହୁଏ ? ନବାତ ପରି ଫାଣ୍ଡି କରେଇରେ କେହି ଚିନି କରନ୍ତି ନାହିଁ । ଚିନି କଳରେ ହୁଏ । କଳରେ ବଡ଼ ବଡ଼ ଫାଣ୍ଡି କରେଇ ଥାଏ । ମାତ୍ର ଘରେ ଫାଣ୍ଡି କରେଇରେ ଚିନି କଲେ ଯେପରି ହେବ ତାହା କୁହାଯାଉଛି ।

ହାଡ଼ ପୋଡ଼ିଦେଲେ ଯେଉଁ ଅଙ୍ଗାର ହୁଏ ତାକୁ ହାଡ଼ କୋଇଲା କହନ୍ତି । ହାଡ଼ କୋଇଲାରେ ଗୁଡ଼ ପାଣି ପକାଇ ଛାଣିଦେଲେ ଗୁଡ଼ର ରଙ୍ଗ ରହେ ନାହିଁ ପାଣି ସଫା ହୋଇ ବାହାରେ ।

ଗୋଟିଏ ମାଠିଆ ତଳେ ଦୁଇ ତିନୋଟି କଣା କରିଦେଇ ସେଥିରେ ଦୁଇ ତିନୋଟି କୁଟା ମାରି ଦିଅ ସେହି ମାଠିଆଟି ଅଧେ ହାଡ଼ କୋଇଲା ଗୁଣ୍ଡରେ ଭର୍ତ୍ତିକରି ଦିଅ । ଗୋଟିଏ କାଠ ବଇଠି ଉପରେ ସେ ମାଠିଆଟି ରଖ । ତା' ତଳେ ଗୋଟିଏ ବଡ଼ମୁହାଁ ମାଠିଆ ରଖିଦିଅ ।

ଗୁଡ଼ପାଣି ଗରମ କରି ଉପର ମାଠିଆରେ ହାଡ଼ କୋଇଲା ଉପରେ ଅଜାଡ଼ି ଦିଅ । ଟୋପା ଟୋପା ହୋଇ ନିଗିଡ଼ି କରି ତଳ ମାଠିଆରେ ଯେଉଁ ପାଣି ପଡ଼ିବ, ତାହା ସଫା ଚିନି ପାଣି ।

ଏହି ପାଣିକୁ ଚୁଲିରେ ବସାଇ ଦେଲେ ତାହା ବହଳ ହୋଇଯିବ । ଥଣ୍ଡା ହେଲେ ଲୁଣି ପରି କରେଇରେ ଚିନି ଦନ୍ଧିଯିବ ।

ବଡ଼ ବଡ଼ ଫାଣ୍ଡ୍ରୀ, କରେଇମାନଙ୍କରେ କଳରେ ଏହିପରି ଚିନି ହୁଏ । କଳରୁ ଏକାଥରକେ ଶଗଡ଼ ଶଗଡ଼ ଚିନି ବାହାରେ ।

ପ୍ରଶ୍ନ—୧ । ଚିନି କିପରି ତିଆରି କରନ୍ତି ?

୨ । ଅଙ୍ଗାର କିପରି ପୋଡ଼ନ୍ତି ?

୩ । ଗୁଡ଼ରୁ କିପରି ନବାତ ତିଆରି ହୁଏ ତୁମ ନିଜ କଥାରେ କହ ।

# ଲକ୍ଷବନ୍ଧା

ମହାଭାରତରେ କୁରୁପାଣ୍ଡବଙ୍କ କଥା ଶୁଣିଥିବ । ପାଣ୍ଡବ ପାଞ୍ଚ ଭାଇ—ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଆଉ ସହଦେବ କୁରୁମାନେ ଦୁର୍ଯ୍ୟୋଧନ ପ୍ରଭୃତି ଶହେ । ସମସ୍ତେ ଛୁଆପିଲା ପିଲାଦିନେ ଦ୍ରୋଣାଚାର୍ଯ୍ୟ ସେମାନଙ୍କୁ ଧନୁର୍ବିଦ୍ୟା ଶିଖାଉଥିଲେ ।

ସେକାଳେ ତୋପ, ବନ୍ଧୁକ, ଗୁଳି, ବମ୍ଫ, ଏସବୁ ନ ଥିଲା । ଗୋଟିଏ ଧନୁ ବା ବାଉଁଶଖଡ଼ାରେ ଶର ବାନ୍ଧି ଲକ୍ଷ କରୁଥିଲେ ଏହି ଲକ୍ଷ ଯେ ଯେତେ ଠିକଙ୍କର କରି ପାରେ, ସେ ଯୁଦ୍ଧରେ ସେତିକି ପାରିବାର,

ଶହେପାଞ୍ଚ ଭାଇଯାକ ଦ୍ରୋଣାଚାର୍ଯ୍ୟଙ୍କ ପାଖେ ସମସ୍ତେ ଏହି ଧନୁର୍ବାଣରେ ଲକ୍ଷବନ୍ଧା ଶିଖୁଥିଲେ ଦିନେ ଦ୍ରୋଣାଚାର୍ଯ୍ୟ ଏମାନଙ୍କ ବିଦ୍ୟା ପରୀକ୍ଷା କରିବା ପାଇଁ ବାହାରିଲେ ।

ଦ୍ରୋଣାଚାର୍ଯ୍ୟ କାଠରେ ଗୋଟିଏ ନେଳି ଚଢ଼େଇ ତିଆରି କରାଇ ତାଙ୍କ ବଗିଚା ଭିତରେ ଗୋଟିଏ ଗହଳିଆ ଗଛ ଉପରେ ରଖିଦେଇ ସବୁ ଭାଇଗୁଡ଼ିକଙ୍କ ଡାକିଆଣି ଜଣ ଜଣକୁ କହିଲେ—

"ବାପା, ହେଇଟି ଦେଖ, ଗଛ ଉପରେ ପତ୍ର ଗହଳରେ ଏହି ନେଳି ଚଢ଼େଇର ଡାହାଣ ଆଖି ଦିଶୁଛି ?"

ପିଲାମାନେ କହିଲେ "ହଁ, ଦିଶୁଛି ।"

ଆଚାର୍ଯ୍ୟ କହିଲେ, "ଧନୁରେ ଶର ମାରି ଏହି ଚଢ଼େଇର ଆଖିଟିକି ଲକ୍ଷ କରିବାକୁ ହେବ ।"

ପିଲାମାନେ କହିଲେ, "ହଁ ଲକ୍ଷ କରିବୁ ।"

ଦ୍ରୋଣ ସେଠାରୁ ଆଗ ଯୁଧିଷ୍ଠିରଙ୍କୁ ଡାକିଲେ, କହିଲେ, ବାପା କହିଲ, କଣ ଦେଖୁଛ ?"

ଯୁଧିଷ୍ଠିର କହିଲେ, "ଗଛ ଦେଖୁଛି, ପତ୍ର ଦେଖୁଛି, ପକ୍ଷୀ ଗଛଡାଳରେ ବସିଛି ଦେଖୁଛି । ସବୁ ଦେଖୁଛି ।"

ଦ୍ରୋଣ କହିଲେ—"ଆଚ୍ଛା ତେବେ ରହ ।" ସେଠାରୁ ଆଉ ସମସ୍ତଙ୍କୁ ଜଣ ଜଣ କରି ପଚାରିଗଲେ । ସମସ୍ତେ ସେହିପରି କହିଲେ । ଦ୍ରୋଣଙ୍କ ମୁହଁ ଶୁଖି ଯାଉଥାଏ । ସେ ବୁଝିପାରିଲେ ପିଲାଙ୍କ ଲକ୍ଷ୍ୟ-ଭେଦ ଶିକ୍ଷା ହୋଇନାହିଁ ।

ଶେଷକୁ ଥିଲେ ଅର୍ଜୁନ । ଅର୍ଜୁନଙ୍କୁ ଦ୍ରୋଣ ପଚାରିଲେ—"ବାପା, କହ ଦେଖି କଣ ଦେଖୁଛ ?"

ଅର୍ଜୁନ କହିଲେ "ଗୁରୁଦେବ, ମତେ ତ କାହିଁ ଆଉ କିଛି ଦିଶୁନାହିଁ । ଗଛ ଦିଶୁନାହିଁ, ପତ୍ର ଦିଶୁନାହିଁ, ଚଢେଇଟି ବି ପୂରା ଦିଶୁନାହିଁ । ଚଢେଇର ଖାଲି ସେଇ ଆଖିଟି ଛଡ଼ା ମୋତେ ଆଉ କିଛି ଦିଶୁନାହିଁ ।"

ଦ୍ରୋଣଙ୍କ ମୁହଁ ହସରେ ପୂରି ଉଠିଲା । ଦ୍ରୋଣ ଅର୍ଜୁନଙ୍କୁ କୁଣ୍ଢାଇ ପକାଇ ଆଶୀର୍ବାଦ କରି କହିଲେ, "ବାପା, ତୁମର ଏକା ଲକ୍ଷ୍ୟଭେଦ ଶିକ୍ଷା ହୋଇଛି । ଭଗବାନ କରନ୍ତୁ, ତୁମେ ଏ ବିଦ୍ୟାରେ ନାମ କର ।"

ପ୍ରଶ୍ନ—୧ । ଦ୍ରୋଣ ଯୁଧିଷ୍ଠିର ପ୍ରଭୃତିଙ୍କ କଥାରେ ମୁହଁ ଶୁଖାଇଲେ, ମାତ୍ର ଅର୍ଜୁନଙ୍କ କଥାରେ କାହିଁକି ଖୁସୀ ହେଲେ ?

୨ । ଲକ୍ଷ୍ୟଭେଦ, ଧନୁର୍ବିଦ୍ୟା, ବାହୁବଳ, ଧନୁ, ଶର—ଏହାର ଅର୍ଥ କଣ ?

# ମୋ ଟିକି ଘର

ବନସ୍ତେ ଫୁଟିଲା ଫୁଲ କେଡ଼େ ସୁନ୍ଦର,
କାଟି ମାଟି କାନ୍ଥ ଦେଇ ତୋଳିଲି ଘର ।
ନ ଥିଲା ମୋ ନଡ଼ା ଚାଳ
ପାରି ଯାଉଥିଲା କାଳ
ବାଉଁଶ ପତରେ ଘର କଲି ଛପର,
ବନସ୍ତେ ପାଚିଲା କେତେ ପଣସ ତାଳ ।
ପାଖେ ଥିଲା ନଈ ଧାର ନ ଥିଲା ଖାଲି,
ଲଟି ମାଡ଼ୁଥିଲା କେତେ ଡାଳକୁ ଡାଳ ।
ନ ଥିଲା ତ ଖଞ୍ଜାଶାଳ
ନ ଥିଲା ମୋର ଗୁହାଳ
ଏକୁଟିଆ ଘରଟି ମୋ ନାହିଁ ଜଞ୍ଜାଳ,
ବନସ୍ତ ଭିତରେ ଘର କେଡ଼େ ସୁନ୍ଦର ।
ବସିଥାଏ ଅଙ୍ଗନେ ମୁଁ ଶୁଆକୁ ଚାହିଁ,
ଡାକୁଥାଏ ସାଁଖୁ ଗଛ ଗହଳେ ଥାଇ ।
ଚୁଟେଣେ ମୁହଁ ଖୁଦ କଣି
ଖୁଣ୍ଟି ଖାଉଥାଏ ବଣି
ଘୁମୁର ଘୁମୁର ଡେଣୁ ଆସଇ ପାରା,
ଡେଇଁ ଉଡ଼ିଯାଏ ବଣି ନ ଦିଏ ଧରା ।
ଘୋଡ଼ାଇ ଆସିଲା ମେଘ କଳାକାଣ୍ଡିଆ,
ପଶ୍ଚିମୁ ବହିଲା ବାଆ ସୁଲୁସୁଲିଆ ।
ଶୁଆ ସାରୀ ଗଲେ କାହିଁ
ବଣି ନାହିଁ ପାରା ନାହିଁ

ଏକୁଟିଆ ଅଙ୍ଗଣେ ମୁଁ ହୋଇଛି ଠିଆ
ଘୁଲୁଲିଆ ଚୋପା ସେ ମେଘ ବରକୋଳିଆ ।
ପିଟିଲା ବତାସ ବାଆ ଛିଣ୍ଡିଲା ଡାଳ
ବନସ୍ତ ବୁଡ଼ାଇ ଦେଲା ବରଷା ଧାର ।
ବାଉଁଶ ପତର ଗୁଳ
ପାଣି ବହେ ଝର ଝର
ଝାଟି ମାଟି କାନ୍ଥ, ନାହିଁ ବତାସି ଡର
ବନସ୍ତେ ମୋ ଟିକି ଘର କେଡ଼େ ସୁନ୍ଦର ।

ପ୍ରଶ୍ନ— ୧ । ଏ ପଦ୍ୟଟିର ବିଷୟ ନିଜ ଭାଷାରେ କହ ।
୨ । ଝାଟି ମାଟି କାନ୍ଥକୁ କାହିଁକି ବତାସି ଡର ନ ଥାଏ ?
୩ । ଝଲାହାଣ୍ଡିଆ, ଘୁଲୁଘୁଲିଆ, ବରକୋଳିଆ ଚୋପା, ଯାଇ ଯାଉଛି— ଏହାର ଅର୍ଥ ଲେଖ ।

---

## ହାତୀରେ ଶିକାର

ବଣଜନ୍ତୁମାନଙ୍କ ମଧ୍ୟରେ ହାତୀ ସବୁଠାରୁ ବଡ଼ । ତାର ନାକଟା ଲମ୍ବ ହୋଇ ଓହଳି ତଳକୁ ଲାଗିଥାଏ । ତାକୁ ଶୁଣ୍ଢ ବା ଥୋଡ଼ପାହାଡ଼ କହନ୍ତି । ହାତୀର ତାହା ଗୋଟିଏ ହାତ ପରି କାମ କରେ । ସେ ସେଥିରେ ଗୁଡ଼ାଇ କରି ଡାଳ ଭାଙ୍ଗିଆଣି ଖାଏ । ରାଗିଲେ ଅନ୍ୟ ଜନ୍ତୁଙ୍କୁ ସେଇ ଶୁଣ୍ଢରେ ଗୁଡ଼ାଇ କରି ଆଣି ପାଦରେ ଦଳିଦିଏ । ସାନ ଜିନିଷଟିଏ ପୋଷାହାତୀ ଶୁଣ୍ଢ ଅଗରେ ଥୋଇଦେଲେ ମଧ୍ୟ ସେ ତାହା ନେଇଯାଇ ମାହୁନ୍ତ ଆଡ଼କୁ ବଢ଼ାଇ ଦିଏ । ହାତୀ ଭାରି ପୋଷା ମାନେ ।

ହାତୀ ଶୁଣ୍ଡରେ ପଡ଼ିଲେ କୌଣସି ଜନ୍ତୁର ରକ୍ଷା ନାହିଁ । ହାତୀ ମଧ ଇଚ୍ଛା କଲେ ଶୁଣ୍ଢରେ ଯେ ଅଙ୍ଗକୁ ଇଚ୍ଛା ସେ ଅଙ୍ଗକୁ ବଙ୍କା କରି ଦେଇପାରେ । ଶିକ୍ଷିତ ହାତୀ ପିଠି ଉପରେ ଥିବା ମଣିଷକୁ ଭାରି ଜବରକରେ ଜଗି ରକ୍ଷା କରିପାରେ । ସେଥିପାଇଁ ହାତୀ ପିଠିରେ ବସି ଲୋକେ ବଣରେ ବାଘ ଭାଲୁ ପ୍ରଭୃତି ଜନ୍ତୁ ମାରିବାକୁ ଯାନ୍ତି ।

ଶିକାରୀମାନେ ଏକା ହୋଇ ଗୋଟିଏ ହାତୀ ଧରି ବାଘ ଶିକାରକୁ ଯାନ୍ତି ନାହିଁ । ତିନି ଚାରିଟା ହାତୀରେ ଶିକାରୀମାନେ ବସି ଏକା ସାଙ୍ଗରେ ବଣରେ ପଶନ୍ତି । ଶିକ୍ଷିତ ହାତୀ ବାଘ ଦେଖିଲେ ପଳାଏ ନାହିଁ । ସେଥିପାଇଁ ଶିକ୍ଷିତ ହାତୀ ଉପରେ ବସି ବାଘ ଶିକାର କରିବାକୁ ଶିକାରୀମାନଙ୍କୁ ଭାରି ସୁଖ ଲାଗେ ।

ଥରେ ଏଇପରି କେତେଗୁଡ଼ିଏ ଲୋକ ଜଙ୍ଗଲକୁ ହାତୀରେ ଚଢ଼ି ଶିକାର କରିବାକୁ ଯାଇଥିଲେ । ବଡ଼ ହାତୀଟି ଭଲ ଶିକ୍ଷିତ ହୋଇ ନ ଥିଲା । ସେ କଥାକୁ ଖାତିର ନ କରି, ବଡ଼ ଶିକାରୀ ସେଥି ଉପରେ ବସିଥିଲେ । ବଣରେ ବାଘ ବାହାରି ହଣ୍ଟାଳ ପକାଇଲା । ଗର୍ଜି କରି ଆସି ହାତୀମାନଙ୍କୁ ଆକ୍ରମଣ କଲା । ଶିକ୍ଷିତ ହାତୀମାନେ ମାହୁନ୍ତ କଥା ଓ ଅଂକୁଶ ମାନି ଶିକାରରେ ଲାଗନ୍ତି । କିନ୍ତୁ ଶିକ୍ଷା ପାଇ ନ ଥିଲେ, ହାତୀ ବାଘ ରଡ଼ିରେ ଡରି ପଳାଏ । ବଡ଼ ହାତୀଟି ତ ଭଲ ଶିକ୍ଷା ପାଇ ନ ଥିଲା । ବାଘ ରଡ଼ି କରି ବାହାରିବାର ଦେଖି, ସେ ଥୋଡ଼ପାହାର ଛେକି ଦେଇ ଭୟରେ ପଳାଇବାରେ ଲାଗିଲା । ତା ପିଠିରେ ବଡ଼ ଶିକାରୀ ବସିଥିଲେ । ସେ ଅସ୍ତ ବ୍ୟସ୍ତ ହୋଇ ବାଘକୁ ଗୁଳି କଲେ । ଗୁଳି ବାଘ ଦେହରେ ବାଜିଲା ନାହିଁ । ବାଘ ହାତୀ ଉପରକୁ ଡେମକି ଆସି, ଶିକାରୀଙ୍କ ଜଂଘ କାମୁଡ଼ି ଧରି, ତାଙ୍କୁ ଟିଂକି ପିଠିରେ ପକାଇ

ବଂଶୀକୁ ଗୁଲିଗଲା। ବାଘ ଶିକାରୀଙ୍କ ଜଙ୍ଘ କାମୁଡ଼ି ଥାଏ। ଶିକାରୀ ବାଘର ପିଠି ଉପରେ ପଡ଼ିଥାନ୍ତି। ଆଉ ଆଉ ଶିକାରୀମାନେ ହାତୀରୁ



ଓହ୍ଲାଇ ପଡ଼ି ବନ୍ଧୁକ ଧରି ବାଘର ପଛେ ପଛେ ଗୋଡ଼ାଇଲେ। ବାଟ ଯାକ ବାଘ ଖୋଜ ସାଙ୍ଗେ ସାଙ୍ଗେ ଠୋପା ଠୋପା ରକ୍ତ ପଡ଼ିଥାଏ। ସେହି ଚିହ୍ନ ଦେଖି ଦେଖି ଶିକାରୀମାନେ ବହୁତ

ଖୋଜିଲେ । ଶେଷକୁ ପ୍ରାୟ ୫ ଘଣ୍ଟା ପରେ ଯାଇ ଦେଖିଲେ ବାଘଟି ଶିକାରୀଙ୍କ ଜଂଘ କାମୁଡ଼ି ଧରି ମରି କରି ପଡ଼ିଛି । ଶିକାରୀ ତା ପିଠି ଉପରେ ଅଜ୍ଞାନ ହୋଇ ପଡ଼ିଛନ୍ତି ।

ସମସ୍ତେ ମିଶି ଶିକାରୀଙ୍କୁ ଛିଂଚ୍ଛି ବାଂଚ୍ଛି କରି ହେପାଜତ କଲେ । କେତେବେଳେକେ ଶିକାରୀଙ୍କର ହୋସ୍ ହେଲା । ସେଠାରୁ ସେମାନେ ଶିକାରୀଙ୍କୁ ପଚ୍ଚରିବାରୁ ସେ କହିଲେ, "ମୋ ଜଂଘ କାମୁଡ଼ି ଧରି ବାଘ ଚ୍ଛଲି ଯାଉଥାଏ, ମୁଁ ତା ପିଠି ଉପରେ ପଡ଼ିଥାଏ । କଣ କରିବି ବୋଲି ଭାବୁଛି ବାବୁରୁ ମୋ ମନେ ପଡ଼ିଗଲା, ମୋର ଦୁଇ ପକେଟ୍‌ରେ ବାରୁଦ ଗୁଳି ଭରି ହୋଇ, ଦୁଇଟା ପିସ୍ତଲ ଅଛି । ଦୁଇଟା ଯାକ କାଢିଲି । ଆଗ ବାଁ ହାତ ପିସ୍ତଲର ଗୁଳି ଫୁଟାଇଲି । ସେ ଗୁଳିଟି ବାଘର ପଛଗୋଡ଼ ଜଂଘରେ ବାଜିଲା । ଓହୋ, ସେତେବେଳେ ବାଘ ମୋର ଜଂଘ ହାଡ଼କୁ ଏପରି ଚାପିଦେଲା ଯେ ମୋର ଜଂଘ ହାଡ଼ ସେଥିରେ ବୋଧହୁଏ ଗୁଣ୍ଡା ହୋଇ ଯାଇଛି । ମୁଁ ଦେଖିଲି ସେଥିରେ ମୋର ଚେତା ବୁଡ଼ିଯିବ । ସେତିକି ବେଳେ ପ୍ରାଣ ଛକଛରେ ଆର ପିସ୍ତଲଟି ବାଘର ଛାତିକି ଲଗାଇ ଫୁଟାଇ ଦେଲି । ସଙ୍ଗେ ସଙ୍ଗେ ମୋ ଚେତା ବୁଡ଼ିଗଲା । ମୁଁ ଆଉ କିଛି ଜାଣେ ନାହିଁ । ଏବେ ତୁମେମାନେ ଆସି ମତେ ଛିଂଚ୍ଛି ବାଂଚ୍ଛି କରି ଚେତା କଲ ।"

ଶିକାରୀଟି ଡାକ୍ତରଖାନାକୁ ଗଲା । ଡାକ୍ତର ଗୋଡ଼ଟି କାଟି ଦେଲେ, ମାତ୍ର ଶିକାରୀଟି ବଂଚି ଗଲା ।

ପ୍ରଶ୍ନ—୧ । ଶିକାରୀମାନେ ହାତୀରେ ଚଢ଼ି ଶିକାରକୁ ଯିବାପାଇଁ କାହିଁକି ସୁଖ ପାନ୍ତି ?

୨ । ବଡ଼ ଶିକାରୀ ଯେଉଁ ହାତୀରେ ବସିଥିଲେ ସେ କାହିଁକି ପଳାଇ ଗଲା ?

୩ । ହଣ୍ଟାଳ, ଗର୍ଜନ, ରଢ଼, ହେପାଜତ, ହୋସ୍, ଅଙ୍କୁଶ—
ଏହାର ଅର୍ଥ କଣ ?

---

## କିରାସିନ ତେଲ

ଲୋକେ ଗୁଣି ତେଲ, ସୋରିଷ ତେଲ, ଚେରଚଣା ବା ଚିନାବାଦାମ ତେଲ, ନଡ଼ିଆ ତେଲ ପ୍ରଭୃତି ବ୍ୟବହାର କରନ୍ତି । ଏଇ ତେଲ ସବୁ ଦୀପରେ ବଳିତା ଦେଇ ଜାଳିଲେ ମଧ୍ୟ ଜଳେ । ତେବେ ଜାଳିବାପାଇଁ ସାଧାରଣତଃ ପୁନ୍ନାଙ୍ଗ ତେଲ, କରଞ୍ଜ ତେଲ, ଜଡ଼ା ତେଲ ପ୍ରଭୃତି ବ୍ୟବହାର କରନ୍ତି । ଏହି ତେଲ ସବୁ ଗଛ ଫଳ ବା ମଞ୍ଜିରୁ ବାହାରେ । ପୁନ୍ନାଙ୍ଗ, ନଡ଼ିଆ ପ୍ରଭୃତି ଫଳର ରସକୁ ଖରାରେ ଶୁଖାଇ, ଘଣାରେ ପେଢ଼ି ଲୋକେ ତେଲ ବାହାର କରନ୍ତି । ଗୁଣି, ସୋରିଷ ପ୍ରଭୃତି ସେହିପରି ପେଢ଼ିବାକୁ ହୁଏ । ମୋଟ କଥା ଆମ୍ଭେମାନେ ଏଇ ଯେଉଁ ସବୁ ତେଲ ବ୍ୟବହାର କରୁ ତାହା ଗଛ ଫଳରୁ ବାହାରେ ।

ଏହାଛଡ଼ା ଜନ୍ତୁ ଦେହରୁ ମଧ୍ୟ ତେଲ ପରି ଜିନିସ ବାହାରେ । ଦୁଧରୁ ଘିଅ ବାହାରେ । ମାଛ ଦେହରୁ ରାନ୍ଧିଲେ ତେଲ ବାହାରେ । ଛେଳି ଘୁଷୁରି ପ୍ରଭୃତିଙ୍କ ଚର୍ବିକୁ ରାନ୍ଧିଲେ ମଧ୍ୟ ତେଲ ବାହାରେ ।

କିନ୍ତୁ କିରାସିନି ତେଲ କାହିଁରୁ ବାହାରେ ? ଅନେକେ ଜାଣିଥିବେ ବହୁତ ଗହିରିଆ ଖାତ ଖୋଳି, ଖଣିରୁ ଲୋକେ କିରାସିନ ତେଲ କାଢ଼ନ୍ତି । ସେଥିପାଇଁ ହିନ୍ଦିରେ ଏହାକୁ ମିଟିକା ତେଲ ବା ମାଟି ତେଲ ବୋଲି କହନ୍ତି । କିନ୍ତୁ ମାଟିରେ ତ ତେଲ ନାହିଁ, ମାଟିକୁ ପେଢ଼ିଲେ ମଧ୍ୟ ତେଲ ବାହାରିବ ନାହିଁ ।

କାଠ ଦେହରୁ ତାର୍ପିନ ତେଲ ବାହାରେ । ଶାଳ ଗଛରୁ ଯେଉଁ କ୍ଷୀର ବାହାରେ ତାକୁ ଝୁଣା କହନ୍ତି। ସେଥିରେ ତେଲ ଥାଏ, ସେଥିପାଇଁ ତାକୁ ଗୁନ୍ଧିଲେ ଜଳେ । କିନ୍ତୁ ମାଟିରେ ତେଲ ନ ଥାଏ ।

ବହୁକାଳ ତଳେ ପୃଥିବୀରେ ଗଛ ହାଣି ଜାଳିବା ପାଇଁ ଏତେ ମନୁଷ୍ୟ ନ ଥିଲେ । ହୁଏତ ସେତେବେଳେ ମନୁଷ୍ୟ ପୃଥିବୀରେ ଜନ୍ମ ନ ଥିଲେ । ପୃଥିବୀରେ ବହୁତ ବର୍ଷା ହେଉଥିଲା ; ଦେଶକୁ ଦେଶ ପାଣି ଜମି ଯାଉଥିଲା । ଏହି ଜମିରେ ବହୁତ ବଡ଼ ବଡ଼ ଗଛ ବଢ଼ି ଭାରି ଜଙ୍ଗଲ ହୋଇଥିଲା । ସେଥିରେ ବହୁତ ଜୀବ ଜନ୍ତୁ ଥିଲେ । ଠାଏ ଠାଏ ବହୁତ ପାଣି ଥିବାରୁ ବା ଶୁଖିଲା ବାଲି ଥିବାରୁ ସେଠାରେ ଗଛ ପତ୍ର ହେଉ ନ ଥିଲା । ସେ ସବୁ ଜାଗାରେ ବହୁତ ଜନ୍ତୁ ଜମା ହୋଇ ରହୁଥିଲେ । ଏହିପରି ହଜାର ହଜାର ବର୍ଷ ଗୃଲୁଥିଲା । ଗଛ ଓ ଜନ୍ତୁ ସବୁ ବଢ଼ି, ମରି ତା ଉପରେ ତା ଉପରେ ପଡ଼ି, ହଜାର ହଜାର ଫୁଟ ଉଚ୍ଚ ଜମି ତିଆରି ହୋଇ ଯାଇଥିଲା । ପୁଣି ହଜାର ହଜାର ବର୍ଷ ତା ଉପରେ ମାଟି ପଡ଼ିଲା, ବାଲି ପଡ଼ିଲା, ପଥର ପଡ଼ିଲା । ଏହିପରି ହୋଇ ହୋଇ ପୃଥିବୀର ଦେଶ ଗୁଡ଼ିକ ଉଚ୍ଚ ହୋଇଗଲା, ସେଥିରେ ମନୁଷ୍ୟ ସବୁ ରହିଲେ ।

ଉପର ମାଟିର ଓଜନରେ ମଲା ଗଛ ଓ ଜନ୍ତୁ ଦେହ ପଡ଼ି ପଡ଼ି ଯେଉଁ ସ୍ତରମାନ ପଡ଼ିଥିଲା, ସେ ସବୁ ଚପି ହୋଇ ସେଥିରୁ ତେଲ ବାହାରି ପଡ଼ିଲା । ଚପି ହେବାରେ ସେ ସବୁ ସ୍ତର ମଝିରେ ମଝିରେ ଫାଟି ଗଲା । ସେଇ ଫାଟମାନଙ୍କରେ ତେଲ ସବୁ ଜମା ହୋଇଗଲା । ଏହି ସବୁ ଚପା କାଠ ଓ ଜନ୍ତୁ ଦେହ ହେଉଛି ପଥର କୋଇଲା ଓ ସେଇ ତେଲ ହେଉଛି କିରାସିନି ତେଲ । କିରାସିନି ତେଲ ଗଛ ଓ ଜନ୍ତୁ ଦେହରୁ ବାହାରିଛି, ଏହା ମାଟି ଦେହରୁ ବାହାରି ନାହିଁ ।

ଆମେରିକା, ଇଉନାଇଟେଡ଼ ଷ୍ଟେଟ୍, ରୁଷିଆ, ବ୍ରହ୍ମଦେଶ, ଆସାମ ପ୍ରଭୃତିରୁ ଏବେ କିରୋସିନ ତେଲ ବାହାରୁଛି । ସେ ସବୁଠାରେ ହଜାର ହଜାର ଫୁଟ ଗହ୍ୱର ବଡ଼ ବଡ଼ ଗାତ ଖୋଳିବାକୁ ହୁଏ । ସେ ଗାତରୁ ଆଗ ବାଷ୍ପ ଓ ପାଣି ବାହାରେ । ଏହି ବାଷ୍ପ ଓ ପାଣି ମନକୁ ଉପରକୁ ଉଠେ, ତା ଉପରୁ ପଂପ୍ ବା ଦମକଳ ଲଗାଇ ତେଲ ଉଠାଇବାକୁ ହୁଏ ।

ଆମେ ଯେଉଁ କିରୋସିନ ତେଲ ଜାଳୁ ଖଣିରୁ ସେ ତେଲ ସେଇପରି ବାହାରେ ନାହିଁ । ଖଣିରୁ ଗୁଡ଼ ପରି ଗୋଟିଏ ଜିନିଷ ବାହାରେ । ବଡ଼ ବଡ଼ ହାଣ୍ଡିରେ ପୁରି ଢାଙ୍କୁଣୀ ଦେଇ, ଏହି ଗୁଡ଼ପରି ଜିନିଷକୁ ରାନ୍ଧନ୍ତି । ଏହି ଢାଙ୍କୁଣୀରେ ଗୋଟିଏ ନଳ ଥାଏ । ସେ ନଳ ଆରମୁଣ୍ଡେ ଆଉ ଗୋଟିଏ ସେଇପରି ଢାଙ୍କୁଣୀଲଗା ହାଣ୍ଡି ଥାଏ । ସେ ହାଣ୍ଡି ଉପରେ ଶୀତଳ ଜଳ ବା ବରଫ ଦେଇ ତାକୁ ଥଣ୍ଡା ରଖିବାକୁ ହୁଏ । ଏହାକୁ ଚୁଆକଳ କହନ୍ତି । ଏହି କଳରେ ଝୁଣାକୁ ରାନ୍ଧି କର୍ପୂରରେ ଚୁଆ ତିଆରି କରନ୍ତି ।

ଶୀତଳ ହାଣ୍ଡିରେ ଯାହା ଜମିଯାଏ ତାହା ମଧ୍ୟ ସଫା କିରୋସିନ ତେଲ ନୁହେଁ । ତାକୁ ପୁଣି ଏଇପରି ଚୁଆ କଳରେ ବସାଇ ରାନ୍ଧି, ସେଥିରୁ ବାଷ୍ପ ବାହାର କରି, ସେଇ ବାଷ୍ପକୁ ଥଣ୍ଡା କରି, ଜାଳେଣି କିରୋସିନ ତିଆରି କରିବାକୁ ହୁଏ । ଏହି କିରୋସିନକୁ ସଫା କରିବାର ଆଉ କେତେ ଉପାୟ ଅଛି । ଏହି କିରୋସିନ ସଫା ହୋଇ ପେଟ୍ରୋଲ ବା ମଟର ତେଲ ତିଆରି ହୁଏ ।

ପ୍ରଶ୍ନ—୧ । ଝୁଣା, ତାର୍ପିନ ତେଲ, କିରୋସିନ କୁଆଡ଼ୁ ଆସେ ?

୨ । ଚୁଆ କିପରି ତିଆରି ହୁଏ ?

# ଚଷାପୁଅ ରଜା ହେଲା

## ( ୧ )

ଜଣେକର ତିନୋଟି ପୁଅ ଥାନ୍ତି । ସେ ବଡ଼ ପୁଅକୁ କହିଲେ, "ଆରେ ବାପୁ, ଆମର ଯୋଉ ଧାନ କିଆରି ଅଛି, ସେଥିରୁ କିଏ ରାତିରେ ଧାନ କାଟି ନେଉଛି; ତୁ ଯା, ଜୁଡ଼ିଆ ମାରି ଜଗିବୁ ।" ଏ କଥା ଶୁଣି ବଡ଼ ପୁଅ ବିଲକୁ ଗଲା ।

ସେ ଭାରି ଅଳସୁଆ । ଯେମିତି ଜୁଡ଼ିଆ ଭିତରକୁ ଗଲା, ସେମିତି ଶେଯଟିଏ ପାରି ଶୋଇ ପଡ଼ିଲା । ତାକୁ ନିଘୋଡ଼ ନିଦ ହେଲା । ସକାଳୁ ଉଠିଲା ବେଳକୁ ସେ ଦେଖିଲା, ଧାନଗଛ ସବୁ କିଏ କାଟି ନେଇ ଯାଇଛି । କାନ୍ଦୁଣି ମାନ୍ଦୁଣି ହୋଇ ସେ ଘରକୁ ଫେରିଗଲା । ବାପା ଭାରି ବ୍ୟସ୍ତ ହେଲେ । ସେ ବର୍ଷଟି ଯାକ ଧାନ ନ ପାଇ ସେମାନେ କଷ୍ଟରେ ଚଳିଲେ ।

ଆର ବର୍ଷ ମାର୍ଗଶିର ମାସରେ ଧାନ ପାଚିଲାବେଳକୁ ବାପା ମଝିଆ ପୁଅକୁ କହିଲେ, "ଆରେ ବାପୁ, ଏଥର ତୁ ଗଲୁ ବିଲ ଜଗିବୁ । ଦେଖି, ରାତିରେ ଏକା ଶୋଇବୁ ନାହିଁ । ଦିନରେ ଘରକୁ ଆସି ଶୋଇ ରାତି ଅନିଦ୍ରା କଟେଇବୁ ।"

ମଝିଆଁ ପୁଅ ଗଲା । ନିଦ ମାଡ଼ି ଆସୁଥାଏ । ସେ ସେହି ଜୁଡ଼ିଆ ଭିତରେ ଉଠ ବସ କରି ନିଦ ଭଙ୍ଗେଇଲା । ଯୋଡ଼ାଏ ଲଙ୍କାମରିଚ ନେଇଥାଏ ଯେ, ବେଶି ନିଦ ମାଡ଼ିଲା ବେଳକୁ ତାକୁ ପୋଡ଼ି ଲଙ୍କାମରିଚ ଧୂଆଁ ଶୁଙ୍ଘେ । ସେ ଧୂଆଁରେ ଭାରି ଛିଙ୍କ ହୋଇ ତା ନିଦ ଭାଙ୍ଗି ଯାଏ । ଇମିତି କେତେବେଳ ଗଲା । ପାହାନ୍ତିଆ ପହରକୁ ତା ନିଦ ଆଉ ଲଙ୍କାମରିଚ ଧୂଆଁକୁ ମାନିଲା ନାହିଁ । ସେ ଶୋଇ ପଡ଼ିଲା ।

ଠିକ୍ ଏ ବେଳ ଯାଉଛି, ଘୁଙ୍ଗଆ ହୋଇ ସେ 'ଜୁଠି' ବିଲକୁ ଗ୍ଧହିଁଲା । ଦେଖିଲା, ସର୍ବନାଶ ହୋଇଛି—ଖାଲି ଗ୍ଧର ଗ୍ଧର ଆଙ୍ଗୁଳି ମରଡ଼ ଖୁଣ୍ଟା ଅଛି, ଆଉ 'କୌଣ୍ଡି' କମିତ ଧାନ ଶୀଷା ଟାଏ ଲେଖାଁ ଏ ପଡ଼ିଛି । ସେ କାନ୍ଦ କାନ୍ଦ ଘରକୁ ଗଲା । ବାପା ମୁଣ୍ଡରେ ହାତ ଦେଇ ବସିଲେ ।

ପୁଣି ଆର ବର୍ଷକୁ ଆଶା ଧରି ବାପା ଧାନ ବୁଣିଲେ । ଭାରି ଗହଳିଆ ହୋଇ ଧାନ ଗଛ ଉଠିଲା । ବେଇଶଣ ହେଲା, ବଗ୍ଧା ଖେଲା ହେଲା, ଧାନ ଥୋଡ଼ ଧଇଲା, ପାଚିଲା, ବାଉଁଶ ଦଆଗଲା ଆଉ ଖାଲି ବାକି ରହିଲା ଧାନ କଣ୍ଟା ।

ଏଥର ବାପା ସାନପୁଅକୁ କହିଲେ—ବାପ୍ପା, "ତୁ ଯା ଯେ, ଆଉ ଭାଇମାନଙ୍କ ପରି ଶୋଇ ପଡ଼ିବୁ ନାହିଁ ଟି ।" ସେ କେବେଁ ଶୋଇବ ନାହିଁ ବୋଲି ମନ ଠାଣ କରି ଗଲା । କୁଡ଼ିଆରେ ଶେଯ ପକାଇଲା ନାହିଁ, ଖାଲି ମାଟିରେ ବସିଲା । ଠେଙ୍ଗା ଧରିଥାଏ । ଗ୍ଧତ ପାହାନ୍ତିଆ ହେଲା, ସେତିକି ବେଳକୁ ବିଲ ଭିତରେ ଦାଆ ଖସ ଖସ ଶୁଭିଲା । ଶବ୍ଦ ବାରି ଯାଇ ଦେଖିଲା, ହାତେ ଉଚ୍ଚର ଗୋଟିଏ ମଣିଷ ଟିକି ଦାଆଟିଏ ଧରିଛି, ଗୀତ ଗାଉଛି—

ଖସର ଖସର ଦାଆ
ଖାଇ ଖାଇ ଗ୍ଧଲିଯାଆ ।

ଦାଆ ଲାଗିଲା ମାତ୍ରକେ ଧାନଗଛ ସବୁ କଟି ଯାଉଛି । ସାନ ପୁଅ 'ଗ୍ଧେର ଗ୍ଧେର' ବୋଲି ବଡ଼ ପାଟି କରି ସେ ସାନ ମଣିଷକୁ ଯାଇ ମାଡ଼ ବସିଲା । ତହୁଁ ସେ ଭାରି ବ୍ୟସ୍ତ ହୋଇ "ମତେ ରକ୍ଷା କର, ରକ୍ଷା କର" ବୋଲି କହିଲା । ଆଉ କହିଲା—"ତୁମେ ମତେ ଏତେ ଜୋରରେ ମାଡ଼ି ବସ ନାହିଁ, ଛାଡ଼ିଦିଅ । ମୁଁ ତୁମ ଧାନ କ୍ଷତିକଟି କଣ ବଡ଼ା ବାଣ୍ଟ ଘଟଣ ନେଇ ପହଞ୍ଚାଇ ଦେବି । ଅଙ୍କ

ତମକୁ ଗୋଟିଏ ଘୋଡ଼ା ଓ ଗୋଟିଏ ଖଣ୍ଡା ପୁରସ୍କାର ଦେବ ।” ଘୋଡ଼ା କଥା ଶୁଣି ସାନ ପୁଅ ଆନନ୍ଦରେ ତାକୁ ଛାଡ଼ିଦେଲା ।

ଗୁହୁଁ ଗୁହୁଁ ସାନ ମଣିଷଟି ଧାନତକ ସବୁ କାଟିଲୁଟି ବିଡ଼ା ବାନ୍ଧି ପକେଇଲା । ଗୋଟିଏ ଗୋଟିଏ କରିକରି ମୁଣ୍ଡେଇ ତାଙ୍କ ଘରେ ଆଣି ଥୋଇଦେଲା । ସବାଶେଷକୁ ସାନପୁଅ ଘରକୁ ଅଇଲା । ଦେଖିଲା ବେଳକୁ ଗୁହାଳିରେ ଗୋଟିଏ ଘୋଡ଼ା ବନ୍ଧା ହୋଇଛି ଆଉ କାନ୍ଥରେ ଗୋଟିଏ ଖଣ୍ଡା ଝୁଲୁଛି ।

( ୨ )

ସାନପୁଅ ନାଁ ଶ୍ୟାମସୁନ୍ଦର । ବାପା ପୁଅ କାମରେ ଭାରି ଖୁସି ହୋଇ ଗାଁଯାକ ବୁଲି ବୁଲି କହୁଥାନ୍ତି—“ଆମ ଶ୍ୟାମ ଗୋଟିଏ ଘୋଡ଼ା ଆଉ ଖଣ୍ଡା ପାଇଛି ।” ଯେ ଶୁଣେ ସେ ହସେ । ସମସ୍ତେ ଥଟ୍ଟା କରି କହନ୍ତି—“ଶ୍ୟାମ କଣ ଘୋଡ଼ାରେ ଚଢ଼ି ଖଣ୍ଡା ଧରି ଗଡ଼ ଜିଣିବାକୁ ଯିବ ପରା !” ଶ୍ୟାମ ସବୁ ଶୁଣେ, କିଛି କହେ ନାହିଁ । ମନରେ ଭାବୁଥାଏ—“ବଡ଼ ହେଲେ ଦେଖିବା ।”

କେତେ ବର୍ଷ ଗଲା । ଶ୍ୟାମ ଖେଳ କସରତ କରି ବଳ କମଉଥାଏ । ତାକୁ କୋଡ଼ିଏ ବର୍ଷ ହେଲାରୁ ସେ ସେଇ ଘୋଡ଼ାରେ ଚଢ଼ି ଖଣ୍ଡା ଧରି ବାହାରିଲା । ସେ ଘୋଡ଼ାର ଗୋଟିଏ ଗୁଣ ଯେ, ତା ଠାରୁ ଯୋଜନେ ପଡ଼ିବ, ସେଠୁ କେବେ ହେଲେ ଖସିବ ନାହିଁ । ଆଉ ସେ ଖଣ୍ଡା ତା ହାତରେ ଥିଲେ ଶତ୍ରୁ ପାଖେ ପଶି ପାରିବ ନାହିଁ ।

ଶ୍ୟାମସୁନ୍ଦର ଯାଉ ଯାଉ ଗୋଟିଏ ରାଜ୍ୟରେ ପହଞ୍ଚିଲା । ସେ ରାଜ୍ୟ ରାଜାଙ୍କର ଗୋଟିଏ ବୋଲି ଝିଅ । ରାଜା ଢେଙ୍ଗୁରା ଦେଇଛନ୍ତି—“ପର୍ବତ ଉପର ଆତଗଛରୁ ଯେ ଯୋଡ଼ିଏ ଆତ ଫଳ ଆଣି ଦେବ, ତାକୁ ସେ ତାଙ୍କ ଜେମାଙ୍କୁ ବିଭା ଦେବେ, ଆଉ ରାଜ୍ୟ

ମଧ ଦେବେ ।" କିନ୍ତୁ ସେ ପର୍ବତ ଉପରକୁ ଯିବା ଖୁବ୍ କଷ୍ଟ । ପର୍ବତଟା ଭାରି ଉଚ୍ଚ, ଆଉ ତା ପଥର ଗୁଡ଼ାକ କାଚ ପରି ଚିକ୍କଣ । ପୁଣି ଯେ ଯିବ, ସେ ଘୋଡ଼ା ଚଢ଼ି ଯିବ ବୋଲି ରାଜାଙ୍କର ହୁକୁମ ।

ଶ୍ୟାମସୁନ୍ଦର ଯାଇ ରାଜାଙ୍କ ପାଖରେ ପହଞ୍ଚିଲା । କହିଲା— "ମହାରାଜ ! ମୁଁ ପର୍ବତ ଉପରୁ ଆତ ଆଣି ଦେବି ।" ରାଜା ହସିଲେ, ପାଖ ଲୋକେ ଥଟ୍ଟା କଲେ—

"ବଡ଼ ବଡ଼ ଗଲେ ଫସର ଫାଟି
ସାନ ବାହାରିଲେ ବେସର ବାଟି !"

ରାଜା କହିଲେ, "ହଇ ହେ, ତୁମେ କଣ ଏ କାମକୁ ପାରିବ ? କେତେ ରାଜାପୁଅ ହାରେଇଲେଣି, ତୁମେ କାହିଁକି ମିଛରେ ଚେଷ୍ଟା କରିବ ?" ଶ୍ୟାମସୁନ୍ଦର କହିଲା, ମୁଁ ଥରେ ଚେଷ୍ଟା କରିବି, ଆପଣ ଟିକେ ଅନୁମତି ଦିଅନ୍ତୁ ।" ରାଜା ଶେଷରେ 'ହଁ' କଲେ ।

ତହୁଁ ଶ୍ୟାମ ଘୋଡ଼ାକୁ ଖୁବ୍ ହେପାଦସ୍ତ କରି ତା ଉପରେ ଚଢ଼ି ପର୍ବତ ଉପରକୁ ବାହାରିଲା । ପର୍ବତ ମୂଳରେ ଅନେକ ଲୋକ ରୁଣ୍ଡ ହୋଇଥାନ୍ତି । ତାକୁ ଚାହିଁ ଥଟ୍ଟା କରୁଥାନ୍ତି । କିନ୍ତୁ ଶ୍ୟାମ ସେ ଥଟ୍ଟାରେ ମନଟାଣି ନ ଭାଙ୍ଗି ଘୋଡ଼ାକୁ ପର୍ବତ ଉପରକୁ ଚଢ଼େଇଲା । ଘୋଡ଼ା ଡଗ ଡଗ ହୋଇ ଉପରକୁ ଚାଲିଗଲା । ଲୋକେ ଚାହିଁ ଅବାକ୍ ହେଲେ । ପୁଣି ଟିକକ ବାଦ ଘୋଡ଼ା ଧୀର ଧୀର ହୋଇ ତଳକୁ ଖସି ଆସିଲା । ଶ୍ୟାମସୁନ୍ଦର ହାତରେ ଯୋଡ଼ିଏ ଆତ । ଦେଖଣାହାରି ସମସ୍ତେ ଆନନ୍ଦରେ ହାତ-ତାଳି ଦେଲେ । କିନ୍ତୁ ଯେ ସବୁ ହାରିଥିଲେ, ସେମାନେ ଶ୍ୟାମସୁନ୍ଦରକୁ ହିଂସା କରି ତା ସଙ୍ଗେ ଲଢ଼େଇ କରିବାକୁ ବାହାରିଲେ । ଘଣ୍ଟାକ ମଧ୍ୟରେ ଶ୍ୟାମସୁନ୍ଦରର କରାମତି ଓ ଖଣ୍ଡା ଗୁଣରେ ସେମାନେ ସମସ୍ତେ ହାତ-ଖଣ୍ଡିଆ, ଗୋଡ଼ ଖଣ୍ଡିଆ ହୋଇ ପଡ଼ିଗଲେ । ଶ୍ୟାମସୁନ୍ଦର ଜିଣିଗଲା ।



ଖବର ପାଇ ରାଜା ତାଙ୍କୁ ସଲ୍‌ଟଣରେ ନଅରକୁ ନେଲେ । ଦିନ ବାର ଯୋଗ ଠିକଣା ହୋଇ ଜେମା ସହିତ ତାର ବାହାଘର ହେଲା । ରାଜା ଶ୍ୟାମସୁନ୍ଦର ହାତରେ ରାଜ୍ୟ ଦେଇ ନିଜେ ତୀର୍ଥ କରିବାକୁ ବାହାରିଗଲେ ।

ପ୍ରଶ୍ନ— ୧ । ସାନ ମଣିଷଟି ଶ୍ୟାମସୁନ୍ଦରକୁ ଘୋଡ଼ା ଓ ଖଣ୍ଡା କାହିଁକି ଦେଲା ?

୨ । ଗାଁ ଲୋକମାନେ କାହିଁକି ଶ୍ୟାମସୁନ୍ଦରକୁ ଥଟ୍ଟା କରୁଥିଲେ ?

୩ । ରାଜା କାହିଁକି ତୀର୍ଥ କରି ଚାଲିଗଲେ ?

---